# ଶତାବ୍ଦୀର ଶବ୍ଦ

ଅନନ୍ତ ଚରଣ ଶୁକ୍ଳ




ବିଦ୍ୟାପୁରୀ

ଏହି ସଙ୍କଳନରେ ସନ୍ନିବେଶିତ ଗଳ୍ପଗୁଡ଼ିକ ବିଗତ ଚାରିଦଶନ୍ଧି ମଧ୍ୟରେ 'ଆସନ୍ତାକାଲି', 'ଝଙ୍କାର', 'ସୌରଭ', 'ଗଳ୍ପଝର' ଓ ବାର୍ଷିକ 'ସମାଜ' ପ୍ରଭୃତି ପତ୍ରପତ୍ରିକାରେ ପ୍ରକାଶିତ ହୋଇଥିଲା । ସେଗୁଡ଼ିକୁ ଏକତ୍ର ପ୍ରକାଶ କରିଥିବାରୁ ବନ୍ଧୁ ଶ୍ରୀ ପୀତାମ୍ବର ମିଶ୍ରଙ୍କୁ ସବିଶେଷ ଧନ୍ୟବାଦ ଜଣାଉଛି ।

୧୫ ଫେବୃୟାରୀ ୨୦୦୭ **ଅନନ୍ତ ଚରଣ ଶୁକ୍ଳ**

# ସୂଚୀପତ୍ର

# ସାନ୍ଦୀପନିର ସିମ୍ଫନି

କିଶୋରୀବାବୁଙ୍କ ନିଦଟା ଭାଙ୍ଗିଗଲା । ସେ ସ୍ୱପ୍ନ ଦେଖି ନାହାନ୍ତି କି ଚମକି ନାହାନ୍ତି । ଏମିତି କିଛି ନ ଥାଇ ବି ଏବେ କାହିଁକି ଅନେକ ସମୟରେ ନିଦ ଭାଙ୍ଗିଯାଉଛି । ଇନ୍‌ସମ୍ନିଆ ହେଲାଣି କି ? ହେଇପାରେ । ସେଇଟା ଏବେ କୋଉ ଆଶ୍ଚର୍ଯ୍ୟ କି ? ଠୁମଚ୍ ଏଙ୍କ୍‌ଜାଇଟିଜ୍ । ରେସପନ୍‌ସିବିଲିଟିଜ୍ କଜ୍ ଇନ୍‌ସମ୍ନିଆ, ଇନ୍‌ପଇଜେଶ୍ନ, ଲୋ ପ୍ରେସ୍‌ର ଇତ୍ୟାଦି... କିନ୍ତୁ ହେମ ତ ବାର ବାର କହେ - ଲୋକଟିଏ ଯେ ଏକଦମ୍ ଭୋଳା । ସଂସାର କ'ଣ, କାଳ କ'ଣ, ଅଛି କ'ଣ, ନାହିଁ କ'ଣ, ଏସବୁ ଚଳେ କେମିତି, କି ଯାଏ ତୁମର ସେଥିରେ ? ମରିବା ଲୋକ ତ ମରୁଛି । ଦାୟୀରେ ନାଁ ଲେଖଉଛି କିଏ ତେବେ ? ଦାୟିତ୍ୱ ସବୁ ତ ହେମର । ମାସ ଶେଷରେ ଦରମା ଗଣ୍ଡିଏ ଦେଲେ ହେଲା । ଇନ୍‌ସମ୍ନିଆ ହେବାର କାରଣଟା କ'ଣ ହେଇପାରେ ? କ୍ରନିକ୍ ଡିସେଣ୍ଟ୍ରି ଅବଶ୍ୟ ଅଛି । ସେ ତ ପିଲାଦିନରୁ । ତେବେ ଏମିତି କ'ଣ ରାତି ଅଧରେ ? ଏଇ ତ ରାତି ଏବେ ଦି'ଟା କି ଅଢ଼େଇଟା... ସେ ଘଡ଼ି ଦେଖିଲେ । ରାତି ଦୁଇଟା ବାଜି ଅଣଚାଶ ମିନିଟ୍ । ଛ'ଟା ବାଜି ଅଣଚାଶ ମିନିଟ୍ ହେଲେବି ତ ନିଦ ଭାଙ୍ଗେନା ସେତେବେଳେ । କୁଆ କା କରିବା ଢେର୍ ଆଗରୁ ସିନ୍ଦୂରା ଫାଟିଲେ ମା ବୋଲେ ପ୍ରଭାତ ଅବକାଶ - ପାହିଗଲାଣି ଏ ସୁଖ ରଜନୀ, କେତେ ନିଦ୍ରା ଯାଉଛ ବେଣୁପାଣି । ଶୁକ ସାରୀ ପିକ ଡାହୁକ ଅନେକ...

ଏମିତି କେତେ କ'ଣ । ପୂରା ଅଧଘଣ୍ଟାଏ । ଖୁବ୍ ଖରାପ ଲାଗେ ଶୀତଦିନେ । ଏଇ ତ ସେଦିନ - କଲେଜର ଫାଇନାଲ ଇଅର ବେଳକୁ ବି ସେଇଆ । କାଲି ପରି ଲାଗୁଛି । ମା କହିଲା - କିଶୋରୀରେ, କେଉଁଦିନ ଆଉ ଏ ଢଙ୍ଗ ଛାଡ଼ିବୁ ? ଛୁଆ ଦିନେ ସେମିତି ଶୋଇଥିବୁ ଯେ ରା' ଧରିବୁ ନାହିଁ । ଗାଁ ମାଇପେ କହିବେ - ଛୁଆଟିଏ ତ ତୋରି ! ପଡ଼ିଥିବ ସେମିତି । ପେଟ ଖାଲି ହେଲେ ଟିକିଏ ଯାହା କୁଆଁ କୁଆଁ । ପେଟରେ କିଛି ଟିକିଏ ପଡ଼ିଲେ ଆସିଲା ନିଦ । ଏତୁଟିଏ ହେଲୁ । ତେବେ ବି ସେଇ କଥା । ପଢ଼ିବୁ କିମିତି ଏତେ ଶୋଇଲେ ! ବୁଦ୍ଧି ଚାଲିଯିବ ଯେ ! ଠିକ୍ କଥା, ଶୋଇ ଶୋଇ ବୁଦ୍ଧିବୃତ୍ତି ସବୁ ମାନ୍ଦା ହେଇଯାଇଛନ୍ତି । ହେମ ବି ତ ସେଇ କଥା କହେ - ଏମିତି ନିର୍ବୁଦ୍ଧିଆ ଲୋକ ସଂସାର କରନ୍ତି କାହିଁକି ? ଏକା ତୁମରି ନା, ସବୁ ମାଷ୍ଟରିଆଙ୍କର ଏମିତି ମ ? ମାଷ୍ଟରିଆ ସବୁ ନିର୍ବୁଦ୍ଧିଆ ହୋଇପାରନ୍ତି । କିନ୍ତୁ ବୁଦ୍ଧିବୃତ୍ତି ସାଙ୍ଗକୁ ନିଦ ସବୁ ଚାଲିଯିବାର ତ କୌଣସି କାରଣ ନାହିଁ ଏବଂ ନିଦ ଚାଲିଗଲେ ବୁଦ୍ଧିଟା କ୍ରମଶଃ

ତୀକ୍ଷ୍ଣ ହେବା କଥା । ବରଂ ଦିନକୁ ଦିନ ବେଶି ମାନ୍ଦା ହେଉଛି । ସେଦିନ... ଛି, ଛି, କ'ଣ ଭାବି ନ ଥିବ ସେ କିରାଣିଟା ? ଇମ୍ପର୍ଟାଣ୍ଟ ଡ୍ରାଫ୍‌ଟଟା ଡାକୁ ଡାକୁ ଏମିତି ଗୋଟାଏ ଡ୍ରାଉଜିଂ ନମ୍ବନେସ୍... ଲୋକଟା ବୁଝିପାରି ଡ୍ରାଫ୍‌ଟ ଲେଖା ବନ୍ଦ କରିଦେଇଥିଲା ସେତେବେଳକୁ । ପୂରା ପନ୍ଦର ମିନିଟ୍... ତା'ପରେ ହଠାତ୍ ଯେମିତି ଗୋଟାଏ ଇଲେକ୍‌ଟ୍ରିକ୍ ସକ୍ । କିରାଣିଟା ନ ଜାଣିଲା ପରି କହିଲା, ସାର୍ ! ସେଇ ଚିଠିଟା ଖୁବ୍ ଜରୁରୀ । ପଅରିଦିନ ସୁଦ୍ଧା ଡି.ପି.ଆଇ.ଙ୍କ ପାଖରେ ପହଞ୍ଚିବା କଥା । ଯାଠୁଁ ଅଧିକ ଆଉ କ'ଣ କହିଥାନ୍ତା ସିଏ - ?

ଆପଣ ଢୁଳେଇଲେ, ମୁଁ ଲେଖା ବନ୍ଦ କଲି । ଆପଣ ଆଉ ଢୁଳାନ୍ତୁ ନାହିଁ । ମୋତେ ଡାକିଦିଅନ୍ତୁ ଶୀଘ୍ର । ଏମିତି କ'ଣ କିତା କିତା କହିଥାନ୍ତା ? ନନ୍‌ସେନ୍‌ସ ! ସେଦିନ ସେମିତି ଗ୍ରାମାର୍ କ୍ଲାସ୍‌ରେ କେତେବେଳେ ଯେ ଆଖି ଦି'ଟା ବୁଜିଯାଇଛି... ପିଲାଗୁଡ଼ା ହୁଏତ ଠିକ୍ ମାର୍କ କରିପାରି ନାହାନ୍ତି । ଏଇଟା ଏମିତି ନର୍ମାଲ ନୁହେଁ ତ ! କିଏ କ'ଣ ଭାବିଛି କେଜାଣି ? ଅଧିକାଂଶ ଏକ୍‌ସରସାଇଜ ନେଇ ବ୍ୟସ୍ତ । ଖୁବ୍ ସମ୍ଭବ କୋଡ଼ିଏ ମିନିଟ୍ ଚାଲିଯାଇଛି । ହଠାତ୍ ଯେମିତି ଗୋଟାଏ ଚାବୁକ୍ ପାହାର ବସିଲା ।

ଏତିକି ଭିତରେ ଏସ୍.ଡି.ଓ.ଙ୍କ ପୁଅଟା ସାଇଡ୍‌କୁ ଚାହିଁ ସିଗ୍‌ନାଲିଂ ଆରମ୍ଭ କରି ଦେଇଛି ଆଉ ଝିଅଙ୍କର ସିଟ୍‌ରେ ଚାପା ହସ । ବେଶି ତ ସେଇ ଦି'ଟା-ତହସିଲଦାରଙ୍କ ନଳିଗୋଡ଼ୀ ଝିଅଟା ଆଉ ତା'ସାଙ୍ଗକୁ ରମେଶ ଡିଉଓ୍ୱାନିଆର ଥନ୍ତଲପେଟୀଟା- ସେଥିରେ ପୁଣି ପିନ୍ଧା ହଉଛି ସ୍କାର୍ଟ-ବ୍ଲାଉଜ, ଟାଇଟ୍ ସେଲଓ୍ୱାର । ମା' ବାପ ଗୁଣ ସେଇମିତି । ଷ୍ଟାଫ୍ ମିଟିଂରେ ଏଗୁଡ଼ା ଏଥର ପକେଇ ରୀତିମତ ୟୁନିଫର୍ମ ଡ୍ରେସ୍ ଆରମ୍ଭ କରିବାକୁ ହେବ । ବେଶି ଭାଗ ପିଲା ଅବଶ୍ୟ ଧରିଛନ୍ତି ସାର୍ ଚିନ୍ତା କରୁଥିଲେ । କିନ୍ତୁ ଏସବୁ ତ କସ୍ମିନ୍‌କାଳେ ଠିକ୍ ନୁହେଁ । ପଣ୍ଡିତଙ୍କର କେଜାଣି ବୟସ ହେଲାଣି । ଏମିତି ହେବା ସ୍ୱାଭାବିକ । ତଥାପି ତ ସେଦିନ କଥାଟା ସୀମା ଟପିଯିବାରୁ ତିକ୍ତମଧୁର ବେଶ୍ କିଛି କହିବାକୁ ପଡ଼ିଲା । କ୍ଲାସକୁ ଆସି ଟାସ୍କ ଦେଇସାରି ଯଦି ଘଣ୍ଟା ବାଜିବା ପର୍ଯ୍ୟନ୍ତ କେହି ଜଣେ ନିଶ୍ଚିନ୍ତରେ ବେଶ୍ ଗଭୀର ଭାବରେ ଢୁଳାଏ, ପିଲାମାନେ ରୀତିମତ ହାଟବଜାର ଆରମ୍ଭ କରିଦିଅନ୍ତି ଏବଂ ପାଖ ରୁମରେ ଅନ୍ୟ ଟିଚରମାନେ ପଢ଼େଇବାରେ ଅସୁବିଧା ଭୋଗ କରନ୍ତି ସେ ଯେ କେହି ହୁଅନ୍ତୁ ଓ୍ୱାର୍ଣିଂ ନ ଦେଲେ ଚଳିବ କେମିତି ? କିନ୍ତୁ ବୟସ ନ ହେଇ ବି ଏସବୁ ହେବାର କାରଣ କ'ଣ ? ନିଶ୍ଚୟ କିଛି ଡିଜିଜ୍... ବେଶି ଭାଗ ମେଣ୍ଟାଲ୍ । ଫିଜିକାଲି ତ ଅଲମୋଷ୍ଟ ଅଲରାଇଟ୍ । ଦିହରେ ତ କେବେ ଫେଟ୍ ଲାଗିନି କି ଲାଗିବ ନାହିଁ । ଶ୍ଳେଷ୍ମା ତ ପ୍ରାୟ ନାହିଁ । ବୟସଟା... କେତେ ହବ ? ୟା'ଭିତରେ ଅବଶ୍ୟ ସେସବୁ ପ୍ରତି ଖିଆଲ ନାହିଁ । ସାର୍ଟିଫିକେଟ ଆଉ କୋଷ୍ଠୀ ନିଶ୍ଚୟ ଏକ ହବ । ବାପାଙ୍କ ସମୟର ଲୋକଗୁଡ଼ା ଖୁବ୍ ସରଳ ଥିଲେ କି ନା ! ଅଦଳ ବଦଳ କରିବାର ମତଲବ ବି ସେମାନଙ୍କୁ ଢୁକି ନ ଥିଲା । ବୟସ ମନ୍ଦ ହେଇନି ତେବେ ।

ହେମ ତ ସେଦିନ ସଫା କହିଦେଲା ବୁଢ଼ା ବୋଲି - ନ'ଟା ପିଲାର ବାପ ହେଲ । ବଡ଼ଝିଅଟାକୁ ହେଲାଣି ଆସି ତିରିଶ । କ'ଣ ସେଇମିତି ଟୋକା ହେଇଥା'ନ୍ତ କି ? ସତେ ! ବଡ଼ଝିଅଟା ଆସି ତିରିଶ ବର୍ଷର ହେଲାଣି ? ତା'ର ପୁଣି ଯା ଭିତରେ ତିନିଟା ପିଲା । ତା' ବଡ଼ପୁଅଟା ପଢ଼ିଲାଣି କ୍ଲାସ୍ ଏଇଟ୍‌ରେ, ସତେ ବୁଢ଼ା ନୁହେଁ ଆଉ କ'ଣ ? ବୟସ ହେଲା ତେବେ ଅଣଚାଶ । ସୁମ ବଞ୍ଚିଥିଲେ ହୁଅନ୍ତାଣି ତା'ର ସତଚାଳିଶ । ସତର ବର୍ଷରେ ବାହାଘର । ସୁମର ସେତେବେଳେ ପନ୍ଦର । ଷୋହଳ ବର୍ଷରେ ଝିଅଟିଏ ହେଇ ନଷ୍ଟ ହେଲା । ଓଃ ସେତେବେଳେ ତା'ର ସେ ଯୋଉ କାନ୍ଦଣା ସେଇ ଝିଅଟା ପାଇଁ । ଯିଏ ଯେତେ ବୁଝେଇଲେ କ'ଣ ବୁଝେ ? ... ଅଥଚ ତହସିଲଦାରର ସତର ବର୍ଷର ଝିଅଟା କ୍ଲାସକୁ ଆସୁଛି ସ୍କର୍ଟ ବ୍ଲାଉଜ୍ ପିନ୍ଧି ! ଗୋଟାଏ ବିବର୍ତ୍ତନ ତା'ହେଲେ ଯାଭିତରେ ଘଟିଯାଇଛି... ସୁମର ସତର ବର୍ଷରେ କୁମ । ସେଇଦିନ ତ ହେଲା ସିଏ ଶଯ୍ୟାଶାୟୀ । କୁମର କାଳେ ମାତୃରିଷ୍ଟ ଥିଲା । ଥାଇପାରେ । ନ ହେଲେ ବର୍ଷକ ଭିତରେ ଦୁର୍ଗାପରି ଲୋକଟା ଏମିତି ନଷ୍ଟ ହୋଇଥାନ୍ତା ? ସେଇ କେଇବର୍ଷ ଭିତରେ କି ମାୟା ସେ ଲଗେଇ ନ ଥିଲା ? ଦେହ ମୁଣ୍ଡକୁ ତାର କି ନଜର ! ଝିଅଟିଏ ଥିଲା ବେଶ୍ ହେଇଥିଲା । କି ଦରକାର ଥିଲା ଆଉ ଥରେ ଯା ଭିତରେ ପଶିବାକୁ ? ମା' ଲଗେଇଲା । ଯିଏ ଦେଖିଲା, ସିଏ ଲଗେଇଲା । ଗୋଟାଏ ବୋଲି ପୁଅ; କୁଳଟା କ'ଣ ବୁଡ଼ିଯିବ ? ହେଲା, କୁଳ ଏବେ ରହୁ । ଏକୋଇଶ ବର୍ଷରେ ଆସିଲା ହେମ ।

ତା'ପରେ ତ କୁଳ ରକ୍ଷା ଚାଲିଛି । ଝିଅ-ଝିଅ-ଝିଅ-ଓଃ, ସାତଟା ପରେ ଏବେ ବକଟେ ବୋଲି କୁଳରକ୍ଷକ । ହେମଟା ଅବଶ୍ୟ ସୁମ ତୁଳନାରେ ଆଶାବାଦୀ... କିଶୋରୀବାବୁ ଏଥର ଉଠିପଡ଼ି ବିଛଣାରେ ବସିଲେ । ଆରଘରୁ କାନ୍ଦଣା ଶୁଭିଲା । କୁଳରକ୍ଷକର ନିଶ୍ଚୟ । ହେମ କିନ୍ତୁ ବେଶ୍ ନିର୍ବିକାର ହେଇ ଶୋଇପାରେ । କେମିତି ? ଏତେ ଦଡ଼ାଲା ଥାଇ ବି କେମିତି ତାକୁ ନିଦ ହୁଏ ? ବାଡ଼ିପଟ ଘରେ ବଡ଼ମଝିଆଁଟା ଉଠିଲାଣି । ତା'ର ପରୀକ୍ଷା ପରା ! - ହ-ଅ ! ବିଦୁଷୀ, ରୂପସୀ, ହୁଅନ୍ତୁ ଯିଏ ଯାହା ପାରୁଛନ୍ତି । କୁଳରକ୍ଷକ କାନ୍ଦୁ ତ କୁଳଭକ୍ଷକ ହସୁ । ହୁ କେୟାର୍‌ସ ? କିଶୋରୀବାବୁ ପୁଣି ଥରେ ବିଛଣାରେ ଶୋଇଲେ । ଶେଷ ଫଗୁଣର ପାହାନ୍ତିଆ ପବନ ଥିରି ଥିରି ହେଇ ଝରକାବାଟେ ଭିତରକୁ ପଶୁଥିଲା । ତଥାପି ରାତି ଅନେକ ବାକି । ବାହାରୁ ଆସୁଛି ମଉଳା ମଧୁମାଳତୀ ଫୁଲର ମରମୀ ବାସ୍ନା । ପିଲାମାନେ ପାଠ ପଢ଼ିବେ । ମଣିଷ ହେବେ । ତା'ପରେ ? ହ୍ୱାଟ୍ ଦେନ୍ ? ନାମ ହେବ । ସେମାନେ ସେଦିନ ସେଇ ନାମ କଥା କହୁଥିଲେ ନିଶ୍ଚୟ ! ଭଞ୍ଜବାବୁ କହୁଥିଲା ସୁରେଶକୁ - ବିଚରା ବଡ଼ ଧନ୍ଦାରେ ପଡ଼ିଛି । ଏକାଳରେ ପିଲାଗୁଡ଼ାଙ୍କୁ ମଣିଷ କରିବା କ'ଣ ଟିକିଏ କଥା ? ଖୁବ୍ କହିବା ତାଙ୍କ ସାହସକୁ । ସୁରେଶ କହିଲା, ସାହସ ନା ବଦ୍‌ସାହସ ? କିଏ କହୁଥିଲା ଏତେଗୁଡ଼ାଏ ଅର୍ଜିବାକୁ ? ହ୍ୟା-ପ ହେନ୍-ପେକ୍‌ଡ଼ ! ଏଇ ନାମ ତେବେ ? ଅଫିସରୁ

ବାହାରି ଆସିବା ବେଳକୁ ସବୁ ଚୁପ୍‌ଚାପ୍ । ଇଚ୍ଛା ହେଲା ସୁରେଶକୁ ଆଚ୍ଛା କରି ଗୋଟାଏ ଚଟକଣା ଲଗେଇ ଦେବାକୁ । ସୁରମାକୁ ଟିଉସନ୍ କରି ନ ଥିଲେ ଏଇଟା ପାଠପଢ଼ି ପାରିଥାନ୍ତା ? ଛାଡ଼ ! ହେମ କହିଲା ବଡ଼ଟା ତ ମା'ଙ୍କ କଥାରେ ବାହାହେଲା ଜଲ୍‌ଦି । ପ୍ରତିମାଟା ପଢୁ । କଥାଟା ଅବଶ୍ୟ ଖରାପ କହି ନ ଥିଲା ସିଏ । ପିଲାଟା ବି ଥିଲା ଇଣ୍ଟେଲିଜେଣ୍ଟ । ପଢ଼ାପଢ଼ି କରୁଥିଲା ଭଲ । ସୁବିଧା ବି ଥିଲା । ପଢ଼ିଲା । ତା'ପଛକୁ ନୀଳିମା, ତନିମା, ଅନିମା, ସୁରମା ସଭିଙ୍କର ନମ୍ବରଟା ଏମିତି ଆପେ ଆପେ ଲାଗିଗଲା । ତା' ବୋଲି ହେନ୍-ପେକ୍‌ଡ ? ହେମ କହିଲା - ଏବେତ ପୁଅଝିଅ ସଭିଏଁ ସମାନ । ପଢ଼ନ୍ତୁ । ବୁଢ଼ା ହେବାବେଳକୁ ଚାହିଁବେ ଯେ । ପ୍ରତିମା ମେଡ଼ିକାଲ ପଢ଼ିବ ବୋଲି କହୁଥିଲା । ପୁଣି ଏବେ କ'ଣ ହେଲା, କହିଲା ଜୁଲୋଜି ନେଇ ଏମ୍.ଏସ୍‌ସି. ପଢ଼ିବ । ବେଶ୍ ତା ଇଚ୍ଛା । ଲେକ୍‌ଚରର୍ ହେବାର ପହିଲୁ ପହିଲୁତ ବାହାରେ ରହିଲା । କିଏବା ମାଗେ ତା ଦରମା । ମଝିରେ ମଝିରେ ତା ମନକୁ ପଠାଏ । ଘରକୁ ଆସିଲେ କହେ - ବାପା, ମୁଁ ପରା ଆପଣଙ୍କ ବଡ଼ପୁଅ । ଆପଣ କିଛି ଚିନ୍ତା କରନ୍ତୁ ନାହିଁ । ମୁଁ ଅଛି । ଲୋକଙ୍କଠୁଁ ସେତେବେଳେ ବି ତ କିଛି କମ୍ ନାମ ଅର୍ଜନ କରାହେଇ ନାହିଁ - ଖୁସି ଲାଗୁଛି, ତାଳଗଛ ପରି ଝିଅଟାକୁ ରଖିଛି । ହଁ ରଖିବନି କାହିଁକି ? ରୋଜଗାର ଖାଉଛି । ହେମ ଅବଶ୍ୟ ମୁହାଁମୁହିଁ ହେଇଗଲେ ଏସବୁ କଥାର ରୋକ୍‌ଠୋକ୍ ଜବାବ ଦେଇଦିଏ । ହେଲେ କି ବା ଟଙ୍କାଟା ସେ ଦିଏ ? କେବେ କେମିତି ନାଁକୁ ଖାଲି ଏ ସବୁ । ବିରକ୍ତ ହେବା କଥା ତ । ସେଦିନ ହେମ କହିଲା - ଶୁଣୁଛ ?

- ହୁଁ

- ପ୍ରତିମା କଥା କ'ଣ କିଛି ବୁଝିଲ ?

- କୋଉ କଥା ?

- କୋଉ କଥାମ ଆଉ ? ବଡ଼ଝିଅଟା ବାହାହେଲା ଷୋଳବର୍ଷରେ । ଏଟାକୁ ହେଲାଣି ପଚିଶ । ଆଖି ଫିଟିବ କେତେବେଳେ ?

- ତୁମର ଆଖି ଫିଟିଲାଣି ତ ?

- ମଲା, ଯାହା କୁହନା । ଏଇ ଶୁଣ, ସେଦିନ ଯୋଉ ଝିଅଟି ଆସି ନ ଥିଲା ଆମ ପ୍ରତିମା ସାଙ୍ଗରେ । ସେଇ ଲେକ୍‌ଚରର୍‌ଜଣକ ମ ? ସେଇ କଥା ପକେଇଛି । ତା'ରି ଭାଇ ସାଙ୍ଗରେ । ଡାକ୍ତର । ଭଲ ହେବ । ତାଙ୍କର କାଳେ ଝିଅ ପସନ୍ଦ କରିଛନ୍ତି । ଦାବି ନାହିଁ । ତୁମେ କଥା ଦେଲେ ହେଲା ।

- ତୁମେ ଦେଇଛ ତ ?

- ମୁଁ କ'ଣ ଦେବିବା ? ଆପେ ଆପେ ଯେଉଁଠି କଥା ଉଠୁଛି ତାକୁ ଆଉ ଛାଡ଼ିବା ?

- ପ୍ରତିମା କ'ଣ କହୁଛି ?

- ସିଏ ଆଉ କ'ଣ କହିବ ମ ? କହିବ - ହଁ ମୁଁ ବାହା ହେବି ।

(ନା, କହିବ ନାହିଁ ତ, ଓକିଲ ଡାକି ଆଣିଥିଲା କୁହାଇବ ବୋଲି ।) ବେଶ୍ କର ।

- ଏଇ ଶୁଣ, ଟଙ୍କା ପାଇଁ ଚିନ୍ତା କର ନାହିଁ । ପ୍ରତିମା କହୁଛି ସିଏ ଯାହା ରଖିଛି, ସେଥିରେ ଚଳିଯିବ ।

(ସତେ ! ଆଗରୁ ତେବେ ଏତେ ପ୍ରସ୍ତୁତି ?)

- ଝିଅଟିର କ'ଣ କମ୍ ବୁଦ୍ଧି କି ?

- ହବ ନାହିଁ ? ହେମପ୍ରଭା ମହାପାତ୍ରଙ୍କର ଝିଅ ଯେ !

- ହେଡ୍, ରଖ ତୁମ କଥା । ତୁମ ପ୍ରତି ତା'ର ବଡ଼ ନଜର ।

(ଯେମିତି ତୁମର ! ଧନ୍ୟବାଦ !!)

ବାହୁଡ଼ା ଦିନ ଝିଅଟା କିନ୍ତୁ ଖୁବ୍ କାନ୍ଦିଥିଲା । କହିଗଲା - ବାପା, ମୁଁ ଯିମିତି ଥିଲି ସେମିତି ରହିବି । ଝିଅ ହେଇ, ପର କରିବେ ନାହିଁ ମୋତେ ।

ହେମ କହିଲା - ଝିଅ କହିଯାଇଛି ଟଙ୍କା ପଠାଇବ ମାସକୁ ମାସ (କିହୋ କାହିଁକି ? କି ଦରକାର ସବୁ ଏତେ ବନାବନିରେ ?) ସେଦିନ ଚିଠି ଲେଖିଛି - ବାପା, ସିଏ ଗଲେ ଦିଲ୍ଲୀ । ରେଡ଼ିଓ-ଥେରାପିରେ ରିସର୍ଚ୍ଚ କରିବେ ତିନିବର୍ଷ । ତାଙ୍କ ଟଙ୍କା ତାଙ୍କୁ ସେଠି ନିଅଣ୍ଟ । ଘରକଥା ବୁଝିବାକୁ ହଉଛି । ବାପା ଆପଣଙ୍କୁ ଏଠି ଭାରି ପ୍ରଶଂସା କରୁଛନ୍ତି । (ସତେ, ଏତେ ମମତା !) ସିଏ ଦିଲ୍ଲୀରୁ ଲେଖିଛନ୍ତି ଆପଣଙ୍କ ରାଷ୍ଟ୍ରପତି ପୁରସ୍କାର ପାଇଁ ଚେଷ୍ଟା କରିବେ । ତାଙ୍କର ଉଚ୍ଚ ମହଲରେ ଜଣାଶୁଣା ବନ୍ଧୁମାନେ ଅଛନ୍ତି (ଆହା ! ଏତେ ଦରଦ !) ଆପଣ କିନ୍ତୁ ଏଆଡ଼େ ନିଶ୍ଚୟ ଚେଷ୍ଟା କରିବେ । ମୋ ରାଣ । ଏଆଡୁ ଯେମିତି ଫର୍ମଗୁଡ଼ା ଭଲ ଫିଲ୍-ଅପ୍ ହୋଇଯିବ । ଦରକାର ହେଲେ ଲେଖିବେ । ମୁଁ ଟଙ୍କା ପଠାଇବା ପାଇଁ ନିଶ୍ଚୟ ଚେଷ୍ଟା କରିବି । (ଏଇଥିପାଇଁ ଏତେ ଗୌରଚନ୍ଦ୍ରିକା ? ଦରକାର ନାହିଁ, ନିଶ୍ଚିନ୍ତ ରହ ମା !) ଆପଣଙ୍କ ଆଶୀର୍ବାଦରୁ ଭଲରେ ଅଛି । ଚିଠି ଲେଖି ଖୁସି କରାଇବେ... ଭଲରେ ଥା ମା ! କିଏ ତୋର ଅଶୁଭ ମନାସୁଛି ? କିଶୋରୀବାବୁ କଡ଼ ଲେଉଟାଇଲେ । ସୁରମାର ରେଓ୍ୱାଜ୍ ଶୁଭୁଛି । ମ୍ୟୁଜିକ୍‌ରେ ଥାର୍ଡ଼ ଇଅର୍ ହେଲା ତା'ର । ତାକୁ ଏଥର ତାନପୁରାଟା କିଣିଦେବାକୁ ହେବ । ପଢ଼ାପଢ଼ି ନ ହେଲା ନାହିଁ । ଧରିଯାଉ ହେଲେ କେଉଁ ଗୋଟାଏ ଲାଇନ୍ । ଏଗୁଡ଼ାକ ପାଇଁ ପୁଣି ସୁନାମ ଶୁଣିବାକୁ ପଡ଼ିଲାଣି । ସୁରମା ପଛକୁ ପରମା ବି ହେଇଆସିଲାଣି । ହାଓ୍ୱା ବାଜୁଛି ତା' ଦିହରେ । ବାଜୁ । ଅଟକେଇବ କିଏ ? କେଉଁଠୁ ଗୋଟାଏ କନ୍‌ଭେଣ୍ଟ ସ୍କୁଲର ବହି ଆଣି ସେଦିନ ପଢୁଥିଲା -

ସନ୍ ଲଭ୍‌ସ ମୁନ୍ ମୁନ୍ ଲଭ୍‌ସ ଡିଉ,<br>
ଆଇ ଲଭ୍ ଓ୍ୱାନ୍, ଦେଟ୍ ଇଜ୍ ଇଉ ।

# ନାଲକୂଳ ମଠ, ନେପାଳବାବୁ ଓ ନାରଣା

ଭଦ୍ରକ ଷ୍ଟେସନଠାରୁ ଗ୍ରାଣ୍ଡଟ୍ରଙ୍କ ରୋଡ଼ରେ କଚେରି ଆଡ଼କୁ ଯେଉଁ ରାସ୍ତାଟା ପଡ଼ିଛି ସେଇ ରାସ୍ତାରେ ଗଲେ ରାଜଘାଟ ପୋଲ ପାଖରେ ଡାହାଣହାତି ଗୋଟାଏ କଚା ସଡ଼କ ଭାଙ୍ଗିଯାଇଥିବାର ଦେଖାଯାଏ; ସେଇ ରାସ୍ତାରେ କିଛି ବାଟ ଗଲେ ଡାହାଣହାତି ଅଧାଭଙ୍ଗା ଚାଳଘରଟିଏ ଦେଖିବାକୁ ମିଳେ । ଘରଟା ଛୋଟ ନୁହେଁ । ଖୁବ୍ ବଡ଼ ଗୋଟାଏ ପାଚେରି ଭଳି । ଲୁଣଧରା ଇଟାର କାନ୍ଥ ବୁଲିଛି । କେଉଁ କାଳରୁ ହେଲାଣି କହିବା ସହଜ ନୁହେଁ । ଭଙ୍ଗା ପାଚେରି ପାର ହେଇ ଭିତରର ପୁରୁଣାକାଳିଆ ସିଂହଦ୍ୱାର ଫାଟକଭଳି ଗୋଟାଏ ଦରଜା ଠେଲି ଭିତରେ ପହଞ୍ଚିଲେ ସୁନ୍ଦର ମନ୍ଦିରଟିଏ । ଜଗମୋହନ, ଝୁଲଣ ବଙ୍ଗଳା ଓ ଆଉ କେତୋଟି ଘର ଦେଖିବାକୁ ମିଳେ । ଏଇଟା ହେଲା ନାଲକୂଳ ମଠର ସଂକ୍ଷିପ୍ତ ପରିଚୟ ।

ନାଲକୂଳ ମଠର ଇତିବୃତ୍ତି କାହାରିକୁ ଜଣା ନାହିଁ । କିନ୍ତୁ ଶୁଣାଯାଏ, ବହୁ ବର୍ଷ ଆଗରୁ ଜଣେ ଗୌଡ଼ୀୟ ବୈଷ୍ଣବ କେବଳ ଚୈତନ୍ୟ-ମୂର୍ତ୍ତି ଆଉ ତୁଳସୀ ମାଳାଟିଏ ନେଇ ଭଦ୍ରକକୁ ଆସିଥିଲେ । ତା' ପରେ ସେ ବହୁ ଆୟାସରେ ରାଧା-କୃଷ୍ଣ ଯୁଗଳ ମୂର୍ତ୍ତି ରଖି ପୂଜା କଲେ । ଠାକୁରଙ୍କ ପ୍ରତାପ କିଛି ଊଣା ନୁହେଁ । ଅନ୍ୟାୟ କଲେ ଲୋକଙ୍କୁ କାଳେ କଞ୍ଚା ଖାଇଯାଉଥିଲେ । ସେଇ ଠାକୁରଙ୍କ ଦୟାରୁ ବାବାଜି ମହାଶୟ ପ୍ରଥମେ ଚାରିମାଣ ଜମି କଲେ । ତା'ପରେ ଆଠମାଣ, ବାରମାଣ, ପଚାଶମାଣ ଏହିପରି କୋଡ଼ିଏ ବାଟି ଜମି କରିଗଲେ । ଠାକୁରଙ୍କର ମନ୍ଦିର ତିଆରି ହେଲା । ଆଖପାଖରେ ପ୍ରଜାପାଟକ ନ ଥିଲେ । ବିପଦ ଆପଦରେ ପୁନେଇଁ ପର୍ବରେ ଠାକୁରଙ୍କ ସେବା ଲାଗି ବାବାଜି ସାହିଟିଏ ବସେଇଲେ । ଏଇମିତି କେତେ କ'ଣ କରିଗଲେ ତା'ର ଇତିହାସ ନାହିଁ । କେବଳ ଯାହା ଶୁଣିବା କଥା । ମଠର ବାଡ଼ିପଟକୁ ଚାଲିଗଲେ ଚାରି ପାଞ୍ଚୋଟି ସମାଧି ସରଳରେଖାରେ ଦେଖିବାକୁ ମିଳେ । ସବା ଶେଷ ସମାଧିଟି ପ୍ରାୟ ନିଶ୍ଚିହ୍ନ ହେଇଗଲାଣି । ସେଇଟି ହଉଛି ସେଇ ଗୌଡ଼ୀୟ ବାବାଜିଙ୍କର । କେତେ କାଳର କଥା ଆଜି କେବଳ ସେଇ ସମାଧି ସଙ୍କେତରୁ ହିଁ ଜଣାପଡ଼େ ।

ମଠର ପୂର୍ବ ନାମ ଥିଲା 'ଛତା ପୋତା ମଠ' । ବାବାଜି ଛତାଟିଏ ପୋତି ଠାକୁର ପୂଜା କରୁଥିଲେ । ମଠ ନ ଥିଲା କି ଜମି ନ ଥିଲା । ଉତ୍ତରପାଖ ଜମିଗୁଡ଼ିକ ଭଲ ଚାଷ ନ ହେବାରୁ ସାଳନ୍ଦୀରୁ ମଠର ପଶ୍ଚିମ ପଟକୁ ଲାଗି ଉତ୍ତର ପଟ ପର୍ଯ୍ୟନ୍ତ ସରୁ

ଡଲିକୁ ପଚାରୁଛି - ଏଇ ଲଭ୍, ଲଭ୍ ମାନେ କ'ଣ ?
- ଭଲପାଇବା ।
- ଭଲ ପାଇବା ମାନେ କ'ଣ ?
- ଭଲ ପାଇବା ମାନେ ଖୁସି ହେବା ।
- ଦୂ-ର୍-ବୋକୀ...

ବୋକୀ ତ ନିଶ୍ଚୟ ସିଏ । ଚାଲୁ ହବା ପାଇଁ ଅଛି ତେବେ ଚାରିପାଞ୍ଚ ବର୍ଷ । କିଏ ଯେମିତି ସେଦିନ ବସିଥାଏ ଦାଣ୍ଡଘରେ - ଓ, ହଁ, ଅଭିରାମବାବୁଙ୍କ ମଝିଆଁଟା, ଯିଏ ଏଥର କଲେଜକୁ ଯାଇଛି । ସେଇଥିପାଇଁ ଝିଅର ଚାଲାଖିଟା ବଢ଼ିଯାଇଥିଲା ତେବେ । ବଢୁ, କ୍ଷତି କ'ଣ ? ହୁଁ, ଚାଲାଖିଟା ସମସ୍ତଙ୍କର ବଢୁଛି । କେବଳ କିଶୋରୀ ଦାସ ବେଳକୁ ଡିକ୍ରିଜ୍ ! ଏଇ ଅଭିରାମବାବୁ ଏମ୍.ଭି.ଆଇ. - ଯାହାତ କେରିଅର୍ ଥିଲା । କେତେ କଷ୍ଟରେ ବି.ଏସ୍‌ସି. ପାସ୍ । ବେକିଙ୍ଗ୍ ଜୋର ଥିଲା ତ ପଶିଗଲା । ଟ୍ରେନିଂ ଯାଇ ପୋଷ୍ଟଟା ପାଇବାର ବର୍ଷକ ଭିତରେ ଏକଦମ୍ ପଟ୍ଟ ପରିବର୍ତ୍ତନ - ମିଲିଅନେଆର । ଝିଅ ବାହା କରାଇଲା ଗୋଟିକୁ ପଚାଶ ହଜାର କରି । ସେଇଥିପାଇଁ ସେଦିନ କହିଥିଲା ବୋଧହୁଏ - ଲକି ଆପଣ କିଶୋରୀବାବୁ, ଇଣ୍ଟେଲିଜେଣ୍ଟ ଝିଅଗୁଡ଼ିଏ ପାଇଚନ୍ତି ଯେ ପଢ଼େଇ ଦେଲେ ହେଇଗଲା । ଆମଭଳି ତଣ୍ଡ ଗଣିବେ କାହିଁକି ? ନ'ଟା ଛାଡ଼ି ନବେ ହେଲେ ବି କି ଯାଏ ? ଝିଅ ନିଜ ଚଏସ୍, ନିଜ ରୋଜଗାରରେ ବାହା ହେବ... ଶେଷ ପଦକ କଥା ତ ନୁହେଁ ଚାବୁକ୍ । କ'ଣ ଗୋଟାଏ ମୁହଁରୁ ବାହାରି ଆସୁଥିଲା । ହୋ-ହୋ କରି ହସି ଗାଡ଼ିରେ ଷ୍ଟାର୍ଟ ଦେଲା ଅଚାନକ । ତା ହସର ଦମକା ଆଉ ଗାଡ଼ିର ହାୱାରେ ରାସ୍ତା କଡ଼ର ଧୂଳି ଆଉ ଶୁଖିଲା ପତ୍ରଗୁଡ଼ାକର ବାଉଳା ଖଣ୍ଡିଆଭୂତ ଭିତରେ ତାଙ୍କ ସାଇକେଲଟା ଆଉ ସେ ନିଜେ ପଡ଼ି ଯାଉ ଯାଉ ରହିଯାଇଥିଲେ ଟିକକରେ ।

ଇଡିଅଟ୍ । ଗାଡ଼ିରୁ ଓହ୍ଲେଇବାକୁ ଟିକିଏ ନାହିଁ । ସେଇ ଗାଡ଼ିରେ ଗାଡ଼ିରେ କଥା ! କି ଦରକାର ? ଇଏତ ଆଉ ସାଇକେଲ ନୁହେଁ । କ'ଣ କହିବାକୁ ହେଲେ ଓହ୍ଲାଇବାକୁ ହେବ । କେଉଁ ଏବେ ମାନ୍ୟ ଲୋକଟା କିଶୋରୀ ଦାସ ଯେ ସେ ଗାଡ଼ିରୁ ଓହ୍ଲେଇବେ ? ପୁରୁଣା ଚିହ୍ନା । ରାସ୍ତାରେ ଦେଖିଲେ । ଗାଡ଼ି ରୋକିଲେ । କଥା ହେଲେ, ସେତିକି କ'ଣ କମ୍ ? କିଶୋରୀ ଦାସ ହେଡ୍‌ମାଷ୍ଟର ପାଇଁ ଅଭିରାମ ମହାପାତ୍ର ଏମ୍.ଭି.ଆଇ.ର ଏ ସମ୍ମାନ ବହୁତ ବେଶି । ଆଶାତୀତ । ସେଦିନ ଆସିଥିଲା ତା ପୁଅ ନିମନ୍ତ୍ରଣ କରି । ପୁଅ କଲେଜରେ ନାମ ଲେଖେଇଲା । ଗୁରୁ ତ ! କେତେ ସମ୍ମାନ ସତେ ! ଅହୋଭାଗ୍ୟ ! ଯା'ପ, ସେଥର ରାମଚରଣ ଅଗ୍ରୱାଲା ପୁଅକୁ ନେଇ କି କାଣ୍ଡଟା ସେ ନ କଲା । ଡ୍ରାମାରେ ଯେମିତି ଇଚ୍ଛା ସେମିତି ଝିଅପାର୍ଟ୍ ନେବେ । ଝିଅ ରାଜି, ଝିଅଙ୍କ ଗାଡ଼ିଏନ୍ ରାଜି । ହେଡ୍‌ମାଷ୍ଟର କହିବାକୁ କିଏ ? ଆନୁଏଲ୍ ଡ୍ରାମା ବନ୍ଦ । ଷ୍ଟ୍ରାଇକ୍ । ସ୍କୁଲ କାନ୍ଥ ବାଡ଼ରେ

ପାମ୍ଫ୍ଲେଟ୍ ଲେଖା - ଇଡିଅଟ୍ କିଶୋରୀ, ଗାଦି ଛୋଡ଼ୋ । କିଶୋରୀ ମାଷ୍ଟର, ଫୋଡ଼୍‌ଯାଓ । କିଶୋରୀ ବାଜେଗା ଏବାର ବାଁଶୋରୀ । ଟିଚରମାନେ କ୍ଲାସକୁ ଯିବା ବେଳକୁ ବେଞ୍ଚ ଉପରେ ଜୋତା ଏକ୍‌ଜିବିସନ୍ ।

ଅଭିରାମ ମହାପାତ୍ର, ରାମଶଙ୍କର ଅଗ୍ରୱାଲା, କରାମତ୍ ଅଲିମାନଙ୍କ ପୁଅଙ୍କଠୁଁ ଅଧିକ ସମ୍ମାନ ଆଉ କ'ଣ ଆଶା କରାଯାଇପାରେ ? ସମଗ୍ର ଜୀବନରେ ଗୋଟାଏ ଗୋଟାଏ ମାଇଲ୍ ଷ୍ଟୋନ୍ - ସ୍ମୃତି ସ୍ତମ୍ଭ । ସମାଜର ନିୟାମକମାନଙ୍କଠୁଁ ଜୀବନରେ ଢେର୍ କିଛି ମିଳିଛି - ନାମ, ଧାମ, ଖାମ । ସେଇ ଖାମ୍‌ଗୁଡ଼ିକ ଭିତରେ ଆସିଥିବା ଚିଠିଗୁଡ଼ାକ ସବୁ ଏବେ ସାଇତା ରହିଛି ଆଲମିରାରେ - ଗୋଟିଏ ଗୋଟିଏ ମୂଲ୍ୟବାନ୍ ସାର୍ଟିଫିକେଟ୍ - ଡିପ୍ଲୋମା । ଏଥିରେ ଷ୍ଟାଫ୍ ସପୋର୍ଟ ଥିଲା ବୋଲି କଥାଟା ଦବିଗଲା ସହଜେ । ନ ହେଲେ ତ ସେଥର ପରି ହେଇଥା'ନ୍ତା । ତ୍ରିଲୋଚନ ଦାସକୁ ନେଇ କି କାଣ୍ଡଟା ବା ନ ହେଲା ସେଥର । ଷ୍ଟାଫ୍ ଦି'ଦଳ । ପିଲା ଦି'ଦଳ । ସାତଦିନ ଧରି ପଢ଼ା ବନ୍ଦ । ଜଣେ ପାଠ ପଢ଼େଇବ ନାହିଁ । ପିଲାଙ୍କ ସାଙ୍ଗରେ ଆଡ଼୍‌ଡା ମାରିବ । ଶେଷକୁ ସେଇ ଭୀମ ନାୟକ ଝିଅଟାକୁ ନେଇ - ଛି-ଛି, ଏସବୁ କ'ଣ ଶିକ୍ଷକର କାମ । ବଜାରରେ ତ ଚାଲିହେଲା ନାହିଁ । ଇନ୍ସପେକ୍ଟରଙ୍କୁ ରିପୋର୍ଟ କରି ତା'ର ଟ୍ରାନ୍ସଫର୍ କରାହେଲା ତ କ'ଣଟା ଖରାପ ହେଲା ? ଆପତ୍ତି ହେଲା ଏଇ ଟିଚରଗୁଡ଼ାକଠୁଁ । ଶେଷକୁ ପୁଣି କ'ଣ ନା ଚାଲୁଣି ବାଛୁଚି ଛୁଞ୍ଚିକୁ । ଟୋକାଲୋକ । ନ ହେଲେ ଝିଅଟାକୁ ନେଇ କ'ଣ ଟିକିଏ ହେଇଗଲା । ହେଡ଼୍‌ମାଷ୍ଟର ତ ବୁଢ଼ାଲୋକ, ତାଙ୍କର କ'ଣ ମୋହ ନାହିଁ ? ହଲ ଘରଟା ତିଆରି ବେଳକୁ ତିରିଶହଜାର ଟଙ୍କା କ'ଣ ନିଅଣ୍ଟ ପଡ଼ିଗଲା ? ମିସ୍ ଏପ୍ରୋପ୍ରିଏସନ୍ ନୁହେଁ ତ ଆଉ କ'ଣ ? ତେଣୁ ବି ଚାଲିଲା ଲେଖାଲେଖି । ଶେଷକୁ ଇନ୍ସପେକ୍ଟର ଉପଦେଶ ଦେଲେ - ବୁଝିଲେ କିଶୋରୀବାବୁ, ଆମ ଯୁଗ ଗଲାଣି । ଆଜିକାଲି It is not enough to be a good teacher । ତା' ଛଡ଼ା ଏଡ଼୍‌ମିନିଷ୍ଟ୍ରେଟର ହେଲେ ସଚ୍ଚୋଟ ହେବାଟା ଖୁବ୍ ବେଶି ଦରକାର ନୁହେଁ । Honesty is no more the best policy - ଟାକ୍‌ଟଫୁଲ୍ ଟିକିଏ ହୁଅନ୍ତୁ । ଗାଡ଼ିଏନ୍‌ମାନଙ୍କ ଆପତ୍ତି ନାହିଁ ତ କି ଦରକାର ଆମର ସେଥିରେ ମୁଣ୍ଡ ପୂରେଇବାକୁ ? କୋଉ ପ୍ରାଇଭେଟ୍ ସ୍କୁଲ ହେଇଛି ଯେ ରେଜଲ୍ଟ ଖରାପ ହେଲେ ଜି.ବି. କୈଫିୟତ ମାଗୁଛି । ଲେଟ୍ ଦି ଷ୍ଟୁଡେଣ୍ଟ୍‌ସ ଗୋ ହେଲ୍ । ହୁ କେୟାର୍‌ସ ? ହଁ ଯୁଗ ବଦଳିଛି ।

କିଶୋରୀବାବୁଙ୍କୁ ଖୁବ୍ ଗରମ ଲାଗିଲା । ଏଥର ସେ ଚାଦରଟା କାଢ଼ିଦେଇ ଉଠି ପଡ଼ିଲେ । ବାହାରେ ଫରଚା ପଡ଼ିଲାଣି । କୁଆ ରାବିଲେଣି । ପାହିଗଲାଣି ଏ ସୁଖ ରଜନୀ । କେତେ ନିଦ୍ରା ଯାଉଛ ବେଣୁପାଣି । ନା, ଆଉ ନିଦ୍ରା ନୁହେଁ ମା ! ଏବାର ମହାନିଦ୍ରା । ସହସ୍ର ସହସ୍ର ରଜନୀ ବିତିଯାଇଛି ସୁଖରେ । ଏବାର ଏଇ ଦୁଃଖର ରଜନୀ ସବୁ ଅସରନ୍ତି, ଅପାହାନ୍ତି । ଆର ଘରେ କୁଳରକ୍ଷକ କାନ୍ଦୁଛି । ହେମ ଉଠିଲାଣି ଏଥର ।

ପିଲାଟାକୁ ବାଗଉଛି । ପରମା ଉଠି ଘର ଓଳଉଛି । ଆଉ ଟିକକେ ହେମ ଆସି ଡାକିବ - ଶୁଣୁଛ । ଉଠମ, କି ନିଦ ହଉଛି ତୁମକୁ । ଅଚିନ୍ତା ନିଦ । ପିଲାଟାର କାଲିଠୁଁ ଅମୁଲ ସରିଯାଇଛି । ରାତିରେ ଉଠିଛି ଦି' ଥର । ଘରେ ଚିନି ବୋଲି ଟିକିଏ ନାହିଁ । ନଡ଼ିଆତେଲ ତ ପଅରିଦିନୁଁ ସରିଛି । ଉଠମ, ଆଜି ଆଉ ଡାଲି ହବନି । ଛୁଆଗୁଡ଼ାଙ୍କ ଦିହରେ ଡାଲି ଆଉ ଯାଉନି । କ'ଣ ପଡ଼ିଥିବ ବଜାରରୁ ଝୋଳ ପରିବା ଆଣିବ - ବାଇଗଣ, ନ ହେଲେ ପୋଟଳ ପଡ଼ିଲାଣି କେଉଁ ଦିନୁ । ମଣିଷ ନୂଆ ହେଇ ନାହିଁ ଏଥର । ସେଇ କୋବିଗୁଡ଼ା ଆଉ ଆଣିବ ନାହିଁ । ଢେର ଖିଆ ହେଲାଣି ଏଥର... ତା' ପରେ ହୁଏତ କିଛି ଶାଢ଼ି କି ବ୍ଲାଉଜ୍‌ପିସ୍, ଆଉ ସାମାନ୍ୟ କିଛି ଟଏଲେଟ୍ ଏବଂ ହୁଏତ କାଗଜ, ପେନ୍‌ସିଲ୍, କାଳି ଏମିତି କିଛି । ନ ହେଲେ ଅନ୍ତତଃ ସୂତା ରିଲ୍‌ଟାଏ କି ଛୁଞ୍ଚି ଗୋଟେ... ସରମାର ରିୱାଜ୍ ବନ୍ଦ ହେଲାଣି । ତନିମା ସାଙ୍ଗରେ କ'ଣ ବୋଲାବୋଲି କରୁଛି । ସେ ଦି'ଟାଙ୍କର ସବୁବେଳେ ସେଇଆ । ହୁଅନ୍ତୁ ଯାହା ହେବେ । ନିଜ ଚଏସ୍, ନିଜ ରୋଜଗାର...ଲକି ମେନ୍ ଆଇ ଏମ୍...

କିଶୋରୀବାବୁ କବାଟ ଫିଟାଇ ବାହାରକୁ ଆସିଲେ । ବାହାରେ ସିନ୍ଦୂରା ଫାଟି ନାହିଁ । ପାହାନ୍ତିଆ କୋହଲିଆ ପବନଟା ବନ୍ଦ ହେଇଛି ଟିକିଏ । ଫଗୁଣ କାକର ପଡୁଛି ଘାସ ଉପରେ । ଟଗର, କନିଅର ଫୁଲ ସବୁ ଫୁଟିଆସୁଛନ୍ତି । ମଧୁମାଳତୀ ଲତାରେ ନୂଆ ଫୁଲ । ମଲ୍ଲୀଫୁଲର ପସରା ଫିଟି ପଡ଼ିଛି କେତେବେଳୁ । ସେ ବାହାରକୁ ବାହାରିଗଲେ, ବାଡ଼ିଗୋହିରୀ ପାରି ହୋଇ ଗାଁ ମୁଣ୍ଡ ମଶାଣି ସେପାରିକୁ । ନୀଳ ନୀଥର ଆକାଶ ତଳେ ହୁଡ଼ାମାଳ ବିଲସବୁ ତଥାପି ଘାଲେଇ ପଡ଼ିଛନ୍ତି ଶେଷ ଫଗୁଣର ପତଳା କୁହୁଡ଼ି ତଳେ । ଅନ୍ଧାରୁଆ ତୋଟା ଭିତରୁ ଉଡ଼ି ଆସୁଛନ୍ତି ଚଢ଼େଇ ଦଳକୁ ଦଳ । ଶୁକ, ଶାରୀ, ପିକ, ଡାହୁକ ଅନେକ... ହଳଦୀବସନ୍ତ, କଜଳପାତି, କୁମ୍ଭାଟୁଆ । ଗୋଟିଏ ସୁଖ ରଜନୀର ଅବସାନ ପରେ ପୁଣି ଏକ ନୂତନ ପ୍ରଭାତ । ସେମାନେ ମାଙ୍ଗଳିକ ଗାଇବେ ।

ବାସି ବଉଳର ମହୁଆ ବାସ୍ନା ଭିତରେ ଫାଟିଆସୁଛି ସିନ୍ଦୂରା ଏବଂ ପଶ୍ଚିମ ପଟର ନୀଳେଇ ପାହାଡ଼ ତଳେ ଅସଂଖ୍ୟ ପଲାଶ ଗଛରେ ବିଛୁଡ଼ି ହୋଇ ପଡୁଛି ତା'ର ଫଗୁ ।

କିଶୋରୀବାବୁ ଏକ ବିମୂଢ଼ ସମ୍ମୋହନରେ ଭୂଇଁ ଉପର ଦୂବ ଉପରୁ କେଇ ଆଞ୍ଜୁଳା କାକର ଆଣି ମୁହଁରେ ବୋଳିଦେଇଗଲେ ଥରକୁ ଥର ଏବଂ ସେଇ ଶେଷ ଫଗୁଣର ଫଗୁଳ ପ୍ରଭାତ ଭିତରେ ଖୋଜିବାକୁ ଚେଷ୍ଟା କଲେ କିଛିଟା ଆଶା, କିଛିଟା ଆଶ୍ୱାସନା, ଜୀବନର କିଛିଟା ନୂତନ ଛନ୍ଦ, ନୂତନ ସିମ୍ଫନି...

[୧୯୭୩]

# ଜନୈକ କୁଳପତିଙ୍କ ମୃତ୍ୟୁ

କୁଳପତି ଡଃ ପାକଡ଼ାଶୀ ଖୁନ୍ ହେଇଛନ୍ତି । ଭାଇସ୍ ଚାନ୍‌ସେଲର୍ ଡଃ ପାକଡ଼ାଶୀ ହେଜ୍ ବିନ୍ ଷ୍ଟେବ୍‌ଡ଼୍ ଟୁ ଡେଥ୍ । ହେଇ ସେଦିନ ଯେଉଁ ଡକ୍‌ଟର ପାକଡ଼ାଶୀ ସାଧାରଣ ସଭାରେ ଓଜସ୍ୱିନୀ ଭାଷାରେ କହୁଥିଲେ - ''ବନ୍ଧୁଗଣ ! ଯାହା ମୋର ଭାରପ୍ରାପ୍ତିର ପ୍ରଥମ ଦିବସରେ କହିଥିଲି, ଠିକ୍ ତା'ରି ପୁନରାବୃତ୍ତି ମୁଁ କରୁଛି - ଛାତ୍ରସମାଜର ସବୁକିଛି ଦୋଷ ଦୁର୍ବଳତା ପାଇଁ ଦାୟୀ ଏଇ ଶିକ୍ଷକସମାଜ । ଉଇ ଟିଚର୍‌ସ ଆର ରେସପନ୍‌ସିବ୍ଲ ଫର୍ ଦିଜ୍ କ୍ରାଇମ୍‌ସ । ଆମେ ଇ ଦାୟୀ ସମାଜର ଏଇ ଅଧଃପତନ ପାଇଁ । ଆମେଇ ଦାୟୀ ଏଇ ନୈତିକ ଦୁର୍ବଳତା ପାଇଁ । ଆମେ ଇ ଦାୟୀ ଗୋଟାଏ ଦେଶର, ଗୋଟାଏ ଜାତିର ଏଇ ହା-ହାକାର ପାଇଁ । ଆମରି ଦେଇ ହେବ ଏ ସବୁର ସଂଶୋଧନ । ଆମରି ଦେଇ ହେବ ଏ ସବୁର ସମାଧାନ । ଗୁରୁପ୍ରଧାନ ଏଇ ଭାରତୀୟ ସଂସ୍କୃତିର ପୁନଃପ୍ରତିଷ୍ଠା ପାଇଁ ଜାଗିଉଠୁ ଆଜି ସମଗ୍ର ଦେଶର ଶିକ୍ଷକସମାଜ...'' - ଏବଂ କରତାଳିରେ ଦିଗ୍‌ବିଦିଗ ପ୍ରକମ୍ପିତ ହେଉଥିଲା, ମଣ୍ଡପ ଉପରକୁ ଅଜସ୍ର ପୁଷ୍ପର ବୃଷ୍ଟି ହେଉଥିଲା ଏବଂ ଡଃ ପାକଡ଼ାଶୀଙ୍କର ତେଜସ୍ୱୀ ମୁଖମଣ୍ଡଳରେ ଅଜସ୍ର ସ୍ୱେଦବିନ୍ଦୁର ସଞ୍ଚାର ହେଉଥିଲା । ସେଇ ଡଃ ପାକଡ଼ାଶୀଙ୍କୁ ବିଶ୍ୱବିଦ୍ୟାଳୟର ହତା ଭିତରେ ଖୁନ୍ କରାହେଇଛି ସେଇ କୃଷ୍ଣଚୂଡ଼ା ଗଛତଳେ, ଯେଉଁଠି ମଧ ବୈଶାଖର ଦାରୁଦଗ୍‌ଧ ମଧ୍ୟାହ୍ନରେ ଅଜସ୍ର ରକ୍ତପାଖୁଡ଼ା ଟୋପି ଟୋପି ଚିତା କୁଟାଏ, ଶେଷ ଶ୍ରାବଣର ସବୁଜ ପତ୍ର ତିଳତଣ୍ଡୁଳ ଛାୟାର ସ୍ୱପନ ଆଣେ ଏବଂ ଆଣେ ବାସନ୍ତୀ ସନ୍ଧ୍ୟାର ମଧୁର ହିଲ୍ଲୋଳ, ଚୋରା ଚଇତାଳିର ସ୍ନିଗ୍ଧ ପରଶ । ପତ୍ରବିହୀନ ଗଛଟାର ସେଇ ସ୍କେଲିଟନ୍‌କୁ ବେଖାତିର କରି ଆତତାୟୀମାନେ ତାଙ୍କୁ ଖୁନ୍ କରିଛନ୍ତି । ସେଇ ଗଛଟାର ଆର୍ଟିଷ୍ଟ ଯିଏ ଖରାଦିନେ ଫୁଲର ଚିତା କୁଟାଏ, ବର୍ଷାଦିନେ ଛାଇ ଲିପେ, ଆଉ ଚଇତାଳିର ପଙ୍ଖା ଟାଣେ, ସିଏ କାବା ହେଇ ଚାହୁଁଥିଲା - ଇସ୍ କି ଲାଲ୍, କି ସୁନ୍ଦର ସତେ ଏଇ ମଣିଷଟାର ଖୁନ୍ ! ଏଇଥର ଯା' ସହିତ କମ୍ପିଟିସନ୍ ହେବ । ଖୁବ୍ ଲାଲ ହେବ ଏଥର ଗଛଟାର ଫୁଲ । ଖୁନ୍ ଖରାବୀ, କ୍ରିମସନ, ପର୍ପ୍ଲ ସବୁ ହାର ମାନିବେ । ଗଛଟା ଏଥର ହତା ଭିତରେ ରକ୍ତର ନିଆଁ ଜାଳିବ । ଡଃ. ପାକଡ଼ାଶୀଙ୍କ ରକ୍ତର ନିଆଁ । ତାଙ୍କ ଆଦର୍ଶର ନିଆଁ ।

ଡଃ ପାକଡ଼ାଶୀ ସତେ ଆଦର୍ଶ ହେଇ ରହିଗଲେ । ସହରର ବିଶିଷ୍ଟ ସମ୍ବାଦପତ୍ର ''ଦି ଗ୍ରେଟ୍ ସେଣ୍ଟିନେଲ୍'' ସମ୍ପାଦକୀୟରେ ଲେଖିଥିଲା - ''ଭାରତୀୟ ବିଶ୍ୱବିଦ୍ୟାଳୟ ଇତିହାସରେ ଡଃ ପାକଡ଼ାଶୀ ଯେଉଁ ରକ୍ତର ସ୍ୱାକ୍ଷର ରଖିଦେଇଗଲେ, ତାହା ଯୁଗ

ଯୁଗ ଧରି ଅଲିଭା ରହିଯିବ ।'' ବାର୍ତ୍ତାବହ ଲେଖିଥିଲା - ''ଡଃ ପାକଡ଼ାଶୀଙ୍କ ମୃତ୍ୟୁ ଆଜିର ଏଇ ବନ୍ଧୁର ସମାଜ ହୃଦୟରେ ଏକ ଶାଣିତ ଶଳାକା ବିଦ୍ଧ କରିଛି ।'' ସ୍ୱାଧୀନ ଭାରତ ଲେଖିଥିଲା - ''ସ୍ୱାଧୀନ ଭାରତର ଦୁଇଟି ଜୀବନର ଉତ୍ସର୍ଗ ଉତ୍‌କୀର୍ଣ୍ଣ ଶିଳାଲିପି ହେଇ ରହିଯିବ । ଗୋଟିଏ ବାପୁଜୀଙ୍କର ଓ ଅନ୍ୟଟି ଡଃ ପାକଡ଼ାଶୀଙ୍କର । 'ଦିଗ୍‌ଦର୍ଶନ' ଲେଖିଥିଲା - ''ଡଃ ପାକଡ଼ାଶୀଙ୍କର ମୃତ୍ୟୁ ସମଗ୍ର ପୃଥିବୀର କୁଳପତିମାନଙ୍କୁ ନୂତନ ଦିଗ୍‌ଦର୍ଶନ ଦେଇଛି ।'' ସତେ ଡଃ ପାକଡ଼ାଶୀଙ୍କୁ ଖୁନ୍ କରାହେଇଛି । ତାଙ୍କର ସୁଦୀର୍ଘ କର୍ମମୟ ଜୀବନରୁ ଯେଉଁଦିନ ସେ ଅବ୍ୟାହତିର ସ୍ୱାକ୍ଷର ଦେଇ ଶେଷପୌଷର ଉତ୍ତୀର୍ଣ୍ଣ ସନ୍ଧ୍ୟାରେ ଫେରି ଆସୁଥିଲେ, ଯେତେବେଳେ ସମଗ୍ର ସନ୍ଧ୍ୟାର ଘନୀଭୂତ ଅନ୍ଧକାର ଭିତରେ ଏଠି ସେଠି ଜଳକା ଲାଇଟ୍‌ପୋଷ୍ଟମାନେ ତାଙ୍କର ଚିରପରିଚିତ ଡଃ ପାକଡ଼ାଶୀଙ୍କୁ କୁହୁଡ଼ିର ଚଷମା ଦେଇ ଚିହ୍ନିବାକୁ ଚେଷ୍ଟା କରୁଥିଲେ, ଠିକ୍ ସେତିକିବେଳେ ସେଇ ଥୁଣ୍ଟା କୃଷ୍ଣଚୂଡ଼ା ଗଛ ମୂଳରେ ଆତତାୟୀମାନେ ତାଙ୍କୁ ଖୁନ୍ କରିଛନ୍ତି, ନାତିଦୀର୍ଘ ନାତିସ୍ଥୂଳ ଶରୀରରେ ତାଙ୍କର ଛୁରିକା ବିଦ୍ଧ କରି । ରକ୍ତର ପୋଖରୀ ଭିତରେ ଦରୁଓ୍ୱାନ ତାଙ୍କୁ ଆବିଷ୍କାର କଲା, ତାଙ୍କର କାତର ଚିତ୍କାର ଶୁଣି । ଆଃ, ଡଃ ପାକଡ଼ାଶୀ ଇଜ୍ ଡେଡ୍ ! ଭାଇସ୍ ଚାନ୍‌ସେଲର୍ ଡଃ ପାକଡ଼ାଶୀ ହେଜ୍ ବିନ ଷ୍ଟେବ୍‌ଡ଼ ଟୁ ଡେଥ୍ !

ଡଃ ପାକଡ଼ାଶୀ ଖୁନ୍ ହେବାର ଷଷ୍ଠ ଦିବସ ଆଜି । ଚାରିଦିନ ଧରି ବିଦ୍ୟାଳୟର ସୌଧମାନେ ତାଙ୍କ ପାଇଁ ମୌନବ୍ରତ ପାଳିଥିଲେ । ଯେଉଁଠି ଗୁରୁଗମ୍ଭୀର ଭାଷଣର ଝଙ୍କାର ଉଠେ, ଇଞ୍ଜିନିଅରିଂ କଳକବ୍‌ଜାର ଛାତିଫଟା ଚିତ୍କାର ଶୁଭେ, ଶୁଭେ କଳକାକଳିର, ମୃଦୁ ଆଳାପର, ପ୍ରୀତି ପ୍ରଳାପର କେତେ ନାହିଁ ନ ଥିବା ଗୁଞ୍ଜନ, ଅସୁମାରି ଫୁଲର ଭିଡ଼ ଭିତରେ ଯେଉଁଠି ପ୍ରଜାପତି ପଙ୍ଖରୁ ରେଣୁ ଝଡ଼େ, ନାଇଲନ୍‌ର, ଟେରିଲିନ୍‌ର, ଟେରିକଟ୍‌ର, କଟ୍‌ସୋଲ୍‌ର ଶାଢ଼ିରୁ, ଶାର୍ଟରୁ, ସୁଟରୁ, ସୁରବାଲ୍‌ରୁ, ସେଲ୍‌ଓ୍ୱାରରୁ, ପତଲୁନ୍‌ରୁ, ପାଇଜାମାରୁ, ପଞ୍ଜାବିରୁ ପତଙ୍ଗ ମନର ନହବତ ଛୁଟେ, ଆଖିରେ ଆଖିରେ, ହାତରେ ହାତରେ, କଥାରେ କଥାରେ, ତରଙ୍ଗ ତନୁର ଫୁଆର ଫୁଟେ - ଫୁଟେ ବାସ୍ନା ହେନାର, ଜବା କୁସୁମର, ଚମ୍ପକ ଲତାର - ନୀଳପଦ୍ମର ମହକ, ସେଇ ବିଶ୍ୱବିଦ୍ୟାଳୟର ହତା ଭିତରେ ଶାଳିମାର ପ୍ଲାଷ୍ଟିକ ସେଣ୍ଟେଡ୍ ସୌଧମାନେ ଅନଶନ କରିଥିଲେ, ଅଦର୍ଶନ କରିଥିଲେ, ଅଶ୍ରବଣ କରିଥିଲେ ଦୀର୍ଘ ଚାରିଦିନ ଧରି । ଡଃ ପାକଡ଼ାଶୀଙ୍କ ମୃତ୍ୟୁର ଷଷ୍ଠ ଦିବସରେ ଆଜି ସେମାନେ ପାରାୟଣ କରିବେ । ମୌନବ୍ରତର ପାରାୟଣ । ସ୍ମୃତି ତର୍ପଣର ପାରାୟଣ । ଶୋକ ସାନ୍ତ୍ୱନାର ପାରାୟଣ । ଆଜି ଗାନ୍ଧୀଭବନରେ ଡଃ ପାକଡ଼ାଶୀଙ୍କ ପାଇଁ ଅପରାହ୍ଣ ତିନିଟାରେ ଶୋକସଭା । ବିଶ୍ୱବିଦ୍ୟାଳୟର ସବୁଶ୍ରେଣୀର କର୍ମଚାରୀ, ଛାତ୍ରଛାତ୍ରୀ ଓ ସୁଧୀ ନାଗରିକବର୍ଗ ସେଥିରେ ଯୋଗ ଦେବେ । ଅପରାହ୍ଣ ତିନି ଘଟିକା - ଗାନ୍ଧୀଭବନ । ଅବିସ୍ମରଣୀୟ ରହୁ ଡଃ ପାକଡ଼ାଶୀଙ୍କ ମୃତ୍ୟୁ ।

ଆଜି ମାସର ଚାରି ତାରିଖ । ଡଃ ପାକଡ଼ାଶୀଙ୍କୁ ଖୁନ୍ କରାହୋଇଥିଲା ଗତ ତିରିଶ ତାରିଖ ସନ୍ଧ୍ୟାରେ । ଓଃ ଦୀର୍ଘ ଚାରିଦିନର ଅପେକ୍ଷା ! ‘‘ହାଲ୍ଲୋ, ହାଉ ଡିଡ୍ ଇଉ ଡୁ ? କେମିତି ଅଛନ୍ତି କହନ୍ତୁ ତ ?’’ ଦର୍ଶନ ବିଭାଗର ଅଧ୍ୟକ୍ଷ ଡଃ ମିଶ୍ର ପଚାରିଲେ ବନ୍ଧୁ ଡଃ ମହାନ୍ତିଙ୍କୁ । ସେ ରସାୟନ ବିଦ୍ୟାରେ ଅଧ୍ୟକ୍ଷ । ‘‘ମାସର ଚାରି ତାରିଖ ହେଲା । ଯେମିତି ଅବସ୍ଥା ନା, ମୁଁ ତ ଭାବିଥିଲି ମାସଟା ବୋଧହୁଏ ଗଲା ।’’

-‘‘କହନ୍ତୁ ନାହିଁ ଆଜ୍ଞା, ମୁଁ ବି ତଦ୍‌ବତ । କାଲି ମୋର ଇନ୍‌ସୁରାନ୍‌ସର ଇଅରଲି ପ୍ରିମିଅମ ତାରିଖ । ସେଥିରେ ପୁଣି ନୂଆ ଫିଆଟ୍‌ଟା ପାଇଁ ଇନଷ୍ଟଲମେଣ୍ଟ । ସାନଝିଅଟାର ବାହାଘର, ଶ୍ରୀମତୀଙ୍କର ଜନ୍ମଦିନ । ଆମ ବିବାହର ତ୍ରିଂଶତିତମ ବାର୍ଷିକୀ...’’

-‘‘ଠିକ୍ ସେଇ ଅବସ୍ଥା ଆଜ୍ଞା ! ସାନଶଳାର କ୍ୟାନ୍‌ସର । ସେ ଯିବ ଭେଲୋରକୁ, ଶ୍ରୀମତୀଙ୍କର ତାଗିଦ ସାହାଯ୍ୟ କରିବାକୁ ହେବ । ବଡ଼ଜୁଆଇଁ ଯାଇଛନ୍ତି ସାନ୍‌ଫ୍ରାନସିସ୍କୋ । ଝିଅ ଆଉ ନାତି ଦି’ଟା ମୋ ପାଖରେ । ମଝିଆଁପୁଅଟା ନକ୍‌ସାଲ । ଦୁଇଦିନ ହେଲା ସେ ଶଯ୍ୟାଶାୟୀ । ସି.ପି.ଆଇ.ଏମ୍. ଦଳ ତାକୁ ଘାଏଲ୍ କରିଛନ୍ତି । ସାନଝିଅ ଯିବ ତାଙ୍କ ଡାନ୍‌ସିଂ କ୍ଲବ ତରଫରୁ ଦିଲ୍ଲୀ । ହାତଖର୍ଚ୍ଚ ଅନ୍ତତଃ ତିନିଶହ । କହନ୍ତୁ ନାହିଁ ଆଜ୍ଞା, ବଞ୍ଚିଗଲା ମଣିଷ; କିନ୍ତୁ କି ଘଟଣାଟା କହନ୍ତୁ ତ ! ଡଃ ପାକଡ଼ାଶୀ ପରି ଲୋକ, ତାଙ୍କୁ ପୁଣି ଖୁନ୍ ! ହାଓ ଅନ୍‌ଫର୍ଚୁନେଟ୍ ! କଥାଟା ଭାବିଲେ ସତେ - ଆଇ ଫିଲ ସୋ ସରି । ବିଚାରୀ ମିସେସ୍ ପାକଡ଼ାଶୀ, ସେଥିରେ ପୁଣି ବୁଢ଼ୀମା, ଦି’ ଦି’ଟା ଅଭିଆଡ଼ୀ ଝିଅ । ଭାବିହୁଏନା ଏସବୁ...’’

‘‘ଆରେ ଯାଃ । ସେଥିରେ ପୁଣି ଗୋଟାଏ ଭାବନା ! ଭଦ୍ରମହିଳା ଖୁବ୍ ଲକ୍‌କୀ କିନ୍ତୁ, ଦୁଇଲକ୍ଷ ଟଙ୍କାର ଇନସୁରେନ୍‌ସ । ପୁଣି ସର୍ଭିସ୍ ଅଛି ହଜାରେ ଟଙ୍କାର...’’ ।

-‘‘ସେ ଠିକ୍ ଯେ, ତେବେ ଉଇଡ଼ୋ...’’

-‘‘ପଚାଶ ପରେ ଗୋଟାଏ ଉଇଡ଼ୋ କ’ଣ ମ ? ଏମିତି ଉଇଡ଼ୋ ଅନ୍ତତଃ ଯଦି ମୋ ସ୍ତ୍ରୀ ହୋଇପାରନ୍ତେ ନା... ମୋର ତ ମନେ ହୁଏ ସେ ସେଇମିତି କିଛି କାମନା କରନ୍ତି...’’

-‘‘କାହିଁକି ମ ? ହଠାତ୍ ଏମିତି ସିନିକ୍ ହେଇପଡ଼ିଲେ ଯେ !’’

-‘‘ପାଞ୍ଚବର୍ଷ ତଳେ ଲଗେଇ ଲଗେଇ ଇନ୍‌ସୁରେନ୍‌ସ କରିଛନ୍ତି ଚାଳିଶ ହଜାର । କ’ଣ ନା ଯଦି କିଛି ହୋଇଯାଏ... ଲକ୍‌କୀ ଫେଲୋ ମିସେସ୍ ପାକଡ଼ାଶୀ । ସତେ ଖୁବ୍ ଲକ୍‌କୀ ! କିନ୍ତୁ ଡଃ ପାକଡ଼ାଶୀ - ଆଃ ବିଚାରା ! କାହାର ପୁଣି ଚାନ୍‌ସ ପଡୁଛି କେଜାଣି ?’’

-‘‘କ’ଣ ପୋଷ୍ଟ କଥା କହୁଛନ୍ତି ତ ? ବ୍ଲାଙ୍କ୍, ପୂରା ବ୍ଲାଙ୍କ ଏଥର । କିଏ ଯିବ କହନ୍ତୁ ଅର୍ଗଳିକୁ ? ଉଚ୍ଚ ପାହ୍ୟା ପୋଷ୍ଟଗୁଡ଼ା ଏବେ ପୂରା ହରିକାଠ ହେଇଗଲାଣି ।

ରେଜିଷ୍ଟ୍ରାର ଦାସ ଡଃ ପାକଡ଼ାଶୀଙ୍କୁ କେମିତି କମ୍ଫିଟ୍ କରୁଥିଲେ ଜାଣନ୍ତି ତ ? ଆଜି ଶୁଣିଲି ଏ ମାସ ପନ୍ଦର ତାରିଖରେ ସେ ରିଜାଇନ ଦେଉଛନ୍ତି । ରିଜନ୍ ହାର୍ଟ ଏଟେକ୍ । ଲୋ ବ୍ଲଡ୍ ପ୍ରେସର ହାଇ ହେବାକୁ ଯାଉଛି ବୋଲି ସେ ସନ୍ଦେହ କରନ୍ତି ।''

-''କିନ୍ତୁ ମୁଁ ଯେ ଡଃ ରାୟଙ୍କ କଥା ଶୁଣୁଥିଲି ।''

-''କ'ଣ ଯେ କହନ୍ତି ଆପଣ । ହାର୍‌ଭାର୍ଡ଼ର ପ୍ରଫେସରସିପ୍ ଯେ କୌଣସି ଇଣ୍ଡିଆନ୍ ଇଉନିଭରସିଟିର ଭାଇସ୍ ଚାନ୍‌ସେଲର୍‌ଠାରୁ ଢେର୍ ଉଚ୍ଚରେ । ତାକୁ ଛାଡ଼ି ସେ ଆସିବ ଏ ହରିକାଠକୁ ?

-''ତେବେ ଫିଉଚର ?''

-''ଅନ୍‌ସାର୍ଟେନ୍ ସାର୍, ଅନ୍‌ସାର୍ଟେନ୍ ! କ'ଣ ଯେ ହେବ ଇଉନିଭରସିଟିର ଅବସ୍ଥା... ଭାବି ହୁଏନା ।''

-''ଲୋକଟା କିନ୍ତୁ ବଡ଼ ଆଡ଼ାମେଣ୍ଟ ଥିଲା ହେ !''

-''ଡଃ ପାକଡ଼ାଶୀ ତ ! ଖୁଉବ୍ । ଦେଖିଲେ ନାହିଁ କେମିତି ପେ-କମିସନ୍‌ର ରିପୋର୍ଟଟାକୁ ଚାପିବାକୁ ବସିଥିଲା । ସେଥିରେ ପୁଣି ଏମାନେ ଦାବି କରିଥିଲେ ଟିଫିନ୍ ଆଲାଉନ୍‌ସ । ଏଇ ତ ପୁଣି ଆଜି ଗୋଟାଏ ପୋଷ୍ଟର ଦେଖି ଆସିଲି, କାଲି ସନ୍ଧ୍ୟାରେ ମିଟିଂ । ଏଇ ଟିଫିନ୍ ଆଲାଉନ୍‌ସ ନେଇ କର୍ମଚାରୀ ସଂସଦର ପୁକାର ।''

ହରିବ୍ଲ ସାର୍, ହରିବ୍ଲ । ବଞ୍ଚି ହେବନି ଆଉ । ଜାଣନ୍ତି ଆଜି ଶୋକସଭାରେ ବି ଯୋଗ ଦେବାକୁ ମୋର ଭୟ ହୁଏ ।

-''କ'ଣ ଆସାସିନ୍‌କୁ ?''

-''ନା' ମ, ବମ୍ବିଂ । ମୋର ତ ମନେହୁଏ ସେଥର ସି.ଆର୍.ପି. ରଖିବାକୁ ଯେଉଁମାନେ ସପୋର୍ଟ କରୁଥିଲେ ସେଇମାନେ ହୁଏତ ଆଜି ବମ୍ବିଂ କରିବେ କଣ୍ଡୋଲେନ୍‌ସ ମିଟିଂରେ ।''

...''ପସିବ୍ଲ, ଖୁବ୍ ପସିବ୍ଲ, ଏଭ୍ରି ଥିଂ ଇଜ୍ ପସିବ୍ଲ... କିନ୍ତୁ ଡଃ ପାକଡ଼ାଶୀ... ଭୁଲି ହୁଏନା ଭାଇ, ଘଟଣାଟା ।''

ଡଃ ପାକଡ଼ାଶୀ ଇଜ୍ ଡେଡ୍ !

ଭାଇସ୍ ଚାନ୍‌ସେଲର୍ ଡଃ ପାକଡ଼ାଶୀ ହେଜବିନ୍ ଷ୍ଟେବ୍‌ଡ ଟୁ ଡେଥ୍ ।

ଥୁଣ୍ଟା କୃଷ୍ଣଚୂଡ଼ା ଗଛ ତଳେ ଯେଉଁଠି ତାଙ୍କର ରକ୍ତର ପୋଖରୀ ଜମାଟ ବାନ୍ଧିଥିଲା, ସେଠି ଆଜି ଅସଂଖ୍ୟ ଦର୍ଶକର ଭିଡ଼ । ସେଇ ଭିଡ଼ ଭିତରୁ କୁମାରୀ ପାପିଆ ଗର୍ଗବଟୁ ଅରବିନ୍ଦ କର୍ଲେକର୍‌କୁ ଟାଣି ଆଣିଲା ପଦାକୁ ।

-''ଇସ୍ କି ବୀଭତ୍ସ ! କେମିତି ଯେ ତୁମେ ଏ ସବୁ ଦେଖ !!!''

-''ଇଉ ମଷ୍ଟ ସି ପାପିଆ । ଖାଲି ଦେଖିବା କଥା ନୁହେଁ । ଏଇ ରକ୍ତ ଭିତରେ ଆଦର୍ଶବାଦର ଶୋଷଣ ନୀତିକୁ ପଖାଳିବାକୁ ପଡ଼ିବ । ଦୁନିଆଟା ଏଇ ଆଇଡିଏଲିଜ୍‌ମ ଭିତରେ ସ୍ତ୍ରାଉଣ୍ଡେଲ ହେଇଗଲାଣି ।''

ପାପିଆ ତା'ର ନାକର ପୁଡ଼ା ଦି'ଟାକୁ ଚାହିଁଲା । ଖୁବ୍ ଲାଲ ପଡ଼ିଯାଇଛି । ଅରବିନ୍ଦ ଉତ୍ତେଜିତ ହେଲେ ତା'ର ଗାଲ ଆଉ ନାକପୁଡ଼ା ଏଇମିତି ଆପେଲ୍ ହୁଏ । ପାପିଆ ତା' ପାଟିରେ ଆଙ୍ଗୁଳି ଦେଲା ।

-''ଇସ୍ କି ସାଂଘାତିକ ରେମ୍ଲିଂ । ଆଜି ଡଃ ପାକଡ଼ାଶୀଙ୍କ ପାଇଁ ଶୋକସଭା । ତୁମର ବ୍ଲାକ୍ ବେଜ୍ କାହିଁ ?''

ଅରବିନ୍ଦ ହଠାତ୍ ପାପିଆକୁ ଚାହିଁଲା ନିଜର କଥାଟାକୁ ରୋକି ନେଇ । ଧଳା ଭଏଲ୍‌ସର ସ୍ୱାଟ କଲର୍ ବ୍ଲାଉଜ ସାଙ୍ଗକୁ ପାପିଆ ପିନ୍ଧିଥିଲା ଧଳା ଜର୍ଜେଟ୍‌ର ଶାଢ଼ି । ବବ୍ କଟା ସାମ୍ପୂକରା ବାଳଗୁଡ଼ାକରୁ କିଛି ଅଂଶ ତା'ର ଦୁଇ କାନ୍ଧ ଉପରେ ଇତସ୍ତତଃ ଝୁଲିପଡ଼ିଥିଲା । ପତାରେ ବ୍ଲାକ ପେନ୍‌ସିଲ । ଆଖିରେ ଦେଖି ନ ହେବା ପରି କଜଳ । ଓଠ ଫିକା ଗୋଲାପି ଆଉ ବେକ ତଳକୁ ଯେଉଁଠୁ ବୁକୁ ଦୁଇଭାଗ ହେଇ ଉପରକୁ ଉଠିଛି, ସେଇଠି ପିନ୍‌ରେ ଗୁନ୍ଥା ବ୍ଲାକ୍ ରିବନ୍‌ର ଛୋଟ ଗୋଟାଏ ପିସ୍ । ଅରବିନ୍ଦର ଯେପରି ହଲୁସିନେସନ ହେଲା ! ପାପିଆ ପଚାରିଲା - ''କ'ଣ ଦେଖୁଛ ?''

ଅରବିନ୍ଦ କହିଲା - ଏ 'ମିଷ୍ଟିକ୍ ଭିଜନ୍'

-''ଏବଂ ତହିଁରେ ?''

-''ମିସେସ୍ ପାକଡ଼ାଶୀ, ଏ ୟଙ୍ଗ୍ ଉଇଡ଼ୋ ।''

''ଧେତ୍, ଆଣ୍ଟିରୋମାଣ୍ଟିକ୍ । ମିଷ୍ଟିକ୍ ଭିଜନ ଭିତରେ ତୁମେ ଦେଖିଲ ମିସେସ୍ ପାକଡ଼ାଶୀକୁ ?''

-''କିନ୍ତୁ ତୁମେ ଦେଖିଛ ତାଙ୍କୁ ? ମୋର ତ ମନେହୁଏ ସେ ଠିକ୍ ତୁମରି ପରି ସୁନ୍ଦରୀ ଥିଲେ ଏବଂ ଯଦି ତୁମରି ବୟସରେ ବିଧବା ହେଇଥା'ନ୍ତେ ହୁଏତ ଏଇପରି ଦେଖାଯାଇଥାନ୍ତେ । ସତେ କି ଚମତ୍କାର ହେଇଛି ତୁମର ଏଇ ମେକ୍‌ଅପ !''

-''ତୁମର ଏଇ ସେମି କୋଟ୍‌ର କଲର୍ ତଳେ ବାଁ ପାଖକୁ ଯଦି ଅବ୍‌ଲିକ୍ କରି ବ୍ଲାକ୍ ବେଜ୍‌ଟା ମାରିଥା'ନ୍ତ, ତେବେ ନିଶ୍ଚୟ ଅଚମତ୍କାର ହେଇ ନ ଥାନ୍ତା ।

-''ରିଏଲି । ହାଓ ଷ୍ଟ୍ରାଇକିଂ ଇଜ୍ ୟୋର୍ ସଜେଶ୍ନ !'' ଅରବିନ୍ଦ ଯେମିତି କିଛି ଖୋଜିବାକୁ ଚେଷ୍ଟାକଲା ।

-''ଆଉ, ସୁନ୍ଦର ଦିଶିବ ତୁମେ, ଆଉ ତା'ପାଇଁ ଏଲିମେଣ୍ଟ ଖୋଜିବି ମୁଁ ?''

ପାପିଆ ତା'ର ଭେନିଟି ବେଗରୁ ପିନ୍‌ଗୁଛା ଛୋଟ କଳା ବେଜ୍‌ଟିଏ ବାହାର କରି ଅରବିନ୍ଦ କୋଟ୍‌ର ବାଁ ପାଖରେ ଗୁଛିଦେଲା ଏବଂ ତା'ର ପେଟିମିରର ନେଇ ଅରବିନ୍ଦ ଆଗରେ ଧରିଲା ।

-''ସତେ, କେମିତି ଦେଖାଯାଉଛି ମୁଁ ?''

-''ଡଃ ପାକଡ଼ାଶୀ ବିଫୋର୍ ଡେଥ୍ - ଏ ଇୟଙ୍ଗ୍ ସ୍କଲାର ଗୋଇଂ ଏବ୍ରଡ ।''

-''କିନ୍ତୁ ବେଜ୍‌ଟା ?''

-''ଅବଜରଭିଂ ଦି ଡେଥ ଅଫ୍ ହିଜ୍ ବିଲଭେଡ୍ !'' ଧେତ୍ ! ଅରବିନ୍ଦ ପାପିଆ ମୁହଁରେ ହାତ ଦେଲା । ପାପିଆ କହିଲା, ସତେ ଡଃ ପାକଡ଼ାଶୀଙ୍କର କି ଚମତ୍କାର କେଥୋଲିକ୍ ଟେଷ୍ଟ ? ତୁମର ମନେ ଅଛି ମୋର ସେଇ ଡାନ୍‌ସଟା ? ଗତବର୍ଷ ମଳୟ ଉତ୍ସବରେ ? ତୁମେ ବି ତ ଦେଖି କହିଲ - ଖୁବ ବେଶି ଆମେରିକାନ୍ । କିନ୍ତୁ ଡଃ ପାକଡ଼ାଶୀ ମୋତେ କଗ୍ରାଚୁଲେଟ୍ କରିଥିଲେ, ବହୁଦିନ ପରେ ଯେଉଁ ଦିନ ଆମେ ହଷ୍ଟେଲ ତରଫରୁ ତାଙ୍କୁ ଡାକିଥିଲୁ ବିଂଶତିତମ ବାର୍ଷିକୋତ୍ସବ ଉଦ୍‌ଘାଟନ କରିବାକୁ । କି ଆଶ୍ଚର୍ଯ୍ୟ ! ଦୀର୍ଘ ଛ' ମାସ ପରେ ବି ସେ ମୋତେ ମନେ ରଖିଥିଲେ ଏବଂ ମୋର ହାଣ୍ଡସେକ୍ କରି (ସତେ ଏତେ ବୟସରେ ବି ହାତଟା ତାଙ୍କର ଥିଲା ଅଦ୍ଭୁତ ସେନ୍‌ସିଟିଭ୍) କହିଥିଲେ - ''ଆଇ ଉଇସ୍ ଏ ବ୍ରାଇଟ ଲାଇଫ୍ ଅଫ୍ ୟୋର୍ସ୍ ମାଇଁ ୟଙ୍ଗ୍ ଫ୍ରେଣ୍ଡ' ।''

-''ଲୋକଟା ଉପରେ ମୋର କିନ୍ତୁ ଭୟାନକ ଡିଟେଷ୍ଟ । ସି. ଆର୍. ପି. ଉଠେଇ ଭାବିଥିଲା ଖୁବ୍ ଗୋଟାଏ ମୋରାଲିଟି ଦେଖାଇଛି । ପାଇଛି ବେଟା ତା'ର ରେଜଲ୍ଟ ।''

''ଓଃ କ'ଣ ତୁମେ ଏମିତି କହୁଛ ମ ? ପବନର ବି ପାଟି କାନ ରହିଛି ।''

-''ଭୟ ନାହିଁ ସଖି, ଗତ ତିରିଶ ତାରିଖ ସନ୍ଧ୍ୟାରେ ଯେ ଅରବିନ୍ଦ କାର୍ଲେକାର ଇଉନିଭରସିଟିର ହତା ଭିତରେ ଅନୁପସ୍ଥିତ ଥିଲା, ତା'ର ସାକ୍ଷ୍ୟ ଦେବେ ମିସ୍ ପାପିଆ ଗର୍ଗବଟୁ ଏବଂ ତାଙ୍କର ଶୁଭାକାଂକ୍ଷୀ ପିତା ଦୀନନାଥ ଗର୍ଗବଟୁ, ଆଡ଼ଭୋକେଟ ଜେନେରାଲ ।''

କଳାପତାକା ଝୁଲୁଥିଲା ଗାନ୍ଧୀ ଭବନ ଉପରେ । ଡଃ ପାକଡ଼ାଶୀଙ୍କ ପାଇଁ ଶୋକସଭା ଭିତରେ ଘନେଇ ଉଠିଥିଲା ଗମ୍ଭୀରତା । ତାଙ୍କ ଚେମ୍ବରରେ ଅଧ୍ୟାପିକା ମିସ୍ ସାନ୍ୟାଲ ବହଳ କରି ରୁଜ୍ ଘଷୁଥିଲେ ଗାଲ ଉପର ବ୍ରଣ ଦାଗଟାକୁ ଲୁଚାଇବା ପାଇଁ । ସେ ଆଜି ଶୋକସଭାରେ ପ୍ରଥମେ ଏଲିଜିଆକ୍ ଟୋନ୍‌ରେ ପିଆନୋ ବଜେଇବେ । ଗଭା ନ ପାରି ବାଳଗୁଡ଼ାକ ସେ ଖୋଲିଦେଇଥିଲେ ଯେମିତି ସେ ବ୍ୟସ୍ତ, ବିତ୍ରସ୍ତ, ଏହିପରି । ପିନ୍ଧୁଥିଲେ ଶାଢ଼ି ଆଉ ବ୍ଲାଉଜ-ଅଲ୍ ବ୍ଲାକ ଭଏଲ୍‌ସ । ଆଜି ଡଃ ପାକଡ଼ାଶୀଙ୍କ ପାଇଁ ଶୋକସଭା ।(ତାଙ୍କର ବଟର କଲର୍ ଦେହ ସାଙ୍ଗକୁ ଦୁର୍ଦ୍ଧାନ୍ତ ମେଚ୍ କରୁଛି ଏଗୁଡ଼ା ।)

ଷ୍ଟୁଡେଣ୍ଟ ଫେଡେରେସନ୍‌ର ସଭାପତି ଅମୀୟ ଦାଣ୍ଡେକର୍ ତା'ର ହିପ୍‌ପି ଷ୍ଟାଇଲ୍‌ର କଲିକୁ କଲରିଂ କରୁଥିଲା । ସେ ଆଜି ଡଃ ପାକଡ଼ାଶୀଙ୍କ ଶୋକରେ ମ୍ରିୟମାଣ ହେବ, କିନ୍ତୁ ଆଇଡିଏଲିଜମ୍ ନୁହେଁ, ଆଇକନ୍ କ୍ଲାଜ୍‌ମ ହେବ ତା'ର ମୁଖ୍ୟ ବକ୍ତବ୍ୟ । ଆଇକନ୍ କ୍ଲାଜ୍‌ମ ଭର୍ସେସ୍ ଇମ୍ମୋରାଲିଟି ନୁହେଁ । କିନ୍ତୁ ଡଃ ପାକଡ଼ାଶୀଙ୍କ ଖୁନ୍ ସମ୍ପୂର୍ଣ୍ଣ ଇମ୍ମୋରାଲିଟି । ସେ ତା'ର ଭୟାନକ ବିରୋଧ କରେ । ଷ୍ଟୁଡେଣ୍ଟ୍ ଇଉନିୟନର ସଭାପତି ପ୍ରିୟବ୍ରତ ପତିମିଶ୍ର ନେହେରୁ କଟିଂ ସୁରବାର୍ ଆଉ ପଞ୍ଜାବି ପିନ୍ଧିଥିଲା । ଏଥର ଇଲେକ୍‌ସନ୍‌ରେ ସେ ଅମୀୟ ଦଣ୍ଡେକର୍‌କୁ କମ୍ପିଟ୍ କରିବ । ଡଃ ପାକଡ଼ାଶୀଙ୍କ ପାଇଁ ଶୋକସଭା । ସୁବର୍ଣ୍ଣସୁଯୋଗ । ନକ୍‌ସାଲାଇଟ, ସି.ପି.ଆଇ.ଏମ୍., ଅଲ୍ ଗୋ ହେଲ୍ । ଭାରତର ପ୍ରାଣ ଆଇଡିଏଲିଜ୍‌ମ, ଆଇକନ୍ କ୍ଲାଜମ୍ ନୁହେଁ । ତରୁଣ କବି ଦଶରଥ ଦଳବେହେରା ଷଷ୍ଠବାର୍ଷିକ ମନୋବିଜ୍ଞାନର ଛାତ୍ର । ନିଜ ଲେଖା ଏଲିଜିଟିକୁ ଆଉ ଥରେ ପଢ଼ୁଥିଲା । ଡଃ ପାକଡ଼ାଶୀଙ୍କ ମୃତ୍ୟୁ ଆଜି ପ୍ରତି ହୃଦୟରେ ଯେ ଶୂଳ ବିଦ୍ଧ କରିଛି, ତାହା ଯେ କୌଣସି ପ୍ରେମଜନିତ ଫ୍ରଷ୍ଟ୍ରେଶନ୍‌ଠାରୁ ଢେର୍ ଗଭୀର (ଏବଂ ଶୋକସଭାରେ ମିସେସ୍ ଇରା ନାଗ, ପୂର୍ବେ ମିସ୍ ଇରା ନାଏକ, ତା'ର ସହପାଠିନୀ ନିଶ୍ଚୟ ଉପସ୍ଥିତ ଥିବ) । ଏମାନେ ସମସ୍ତେ ଶୋକସଭାରେ ଯୋଗ ଦେବେ । ଡଃ ପାକଡ଼ାଶୀଙ୍କ ପାଇଁ ଶୋକସଭା । ହାଉ ଅନ୍‌ଫର୍ଚୁନେଟ୍ !

ଆଃ ଡଃ ପାକଡ଼ାଶୀ ଇଜ୍ ଡେଡ୍ ! ଭାଇସ୍ ଚାନ୍‌ସେଲର୍ ଡଃ ପାକଡ଼ାଶୀ ହେଜ୍ ବିନ୍ ଷ୍ଟେବ୍‌ଡ୍ ଟୁ ଡେଥ୍ !! କ'ଣ ସେ କରି ନ ଥିଲେ ବିଶ୍ୱବିଦ୍ୟାଳୟ ପାଇଁ ? ପାଞ୍ଚବର୍ଷ ଭିତରେ ଅନୁଷ୍ଠାନର ଯେ ଘୋଟକ ଉନ୍ନତି, ଇଉ.ଜି. ସି.ରେ ତାଙ୍କର ଯେ ପ୍ରତିପତ୍ତି, ବର୍ଲିନ୍‌ରେ, ଜେନେଭାରେ, ଅକ୍‌ସଫୋର୍ଡରେ, ଏଥେନ୍‌ସରେ, ସିକାଗୋରେ ଅନୁଷ୍ଠିତ ଆନ୍ତର୍ଜାତିକ ବିଶ୍ୱବିଦ୍ୟାଳୟ ଅଧିବେଶନମାନଙ୍କରେ ତାଙ୍କର ଯେ ସୁଖ୍ୟାତି, ଡିଟେଚମେଣ୍ଟ ଫ୍ରମ୍ ପଲିଟିକ୍‌ସ - ଏସବୁ ସତ୍ତ୍ୱେ ତାଙ୍କୁ ତିରିଶ ତାରିଖ ଦିନ ସନ୍ଧ୍ୟାରେ ନୃଶଂସ ଆତତାୟୀମାନେ ଖୁଣ୍ କରିଛନ୍ତି । କି ଆଶ୍ଚର୍ଯ୍ୟ ! କି ପାଥେଟିକ୍ !! କି ମିଜରେବ୍ଲ !!!

"ଲୋକଟା କିନ୍ତୁ ଥିଲା ଭୟାନକ ବାୟାସଡ୍ ।" କହୁଥିଲେ ଡଃ ସାମନ୍ତରାୟ, ଇଂଲିଶ୍‌ର ରିଡର ଏବଂ ଅଧୁନାତନ ବିଭାଗୀୟ ମୁଖ୍ୟ - ଗୋଟାଏ କିଛି ପାର୍ସୋନାଲ୍ ଡିସିସନ୍ ନେବ; ନା ତା' ନୁହେଁ । ସବୁବେଳେ ଖାଲି ସିଣ୍ଡିକେଟ୍ । ପାଞ୍ଚବର୍ଷ ଧରି କେଶ୍‌ଟାକୁ ପକେଇ ରଖିଛି । ମୁଁ ଯେତେବେଳେ ଲଣ୍ଡନରୁ ପିଏଚ୍.ଡି. ପାଏ, ସେତେବେଳେ କେତେଟା ଡକ୍ଟରେଟ୍ ଥିଲେ ଇଂଲିଶ୍‌ରେ ? ଡିପାର୍ଟମେଣ୍ଟର କି ପ୍ରେଷ୍ଟିଜ୍ ମୋ ପାଇଁ ? ଅଥଚ ସେଇ ଜରଦ୍‌ଗବ ଡଃ ସେନ୍ ଯାହାକୁ ମୁଁ ସେତେବେଳେ ଦୟାକରି ଛାଡ଼ିଦେଇଥିଲି, ଯେହେତୁ ସେ ମୋର ଶିକ୍ଷକ, ସବୁବେଳେ ଲାଗିଛି ମୋ ପଛରେ - କ'ଣ ନା ମୁଁ ଲିବେରାଲ୍ । ପରୀକ୍ଷା ପୂର୍ବରୁ କୋଶ୍ଚିନ୍ ଡିକ୍ଲେୟାର କରେ । ପାର୍ସିଆଲ୍ ମାର୍କିଂ କରେ, ଏବଂ କି ଆଶ୍ଚର୍ଯ୍ୟ କହନ୍ତୁ ତ, ଡଃ ପାକଡ଼ାଶୀ ସେଗୁଡ଼ାକ ବିଶ୍ୱାସ କରନ୍ତି । ତା'ଛଡ଼ା

ସେଇ ୟଙ୍ଗଷ୍ଟାର୍ ଡଃ ମହାପାତ୍ର, ଯିଏ ଆସି ପ୍ରଥମେ ମୋରି ଅଣ୍ଡର୍‌ରେ ରିସର୍ଚ୍ଚ କଲା ସିଏ କରୁଛି ମୋ ସହିତ କମ୍ପିଟିସନ । ସେଇଟା ପୁଣି ଗୋଟାଏ ମଣିଷ ! ଏଇ ସେଦିନ ପାଇଛି ଡକ୍ଟରେଟ୍ ! ସିଏ ପୁଣି ଆଣୁଛି ମୋ ନାମରେ ଏଲିଗେସନ । ମୁଁ କାଳେ କୃଷ୍ଣ ମିଶ୍ରର ଥିସିସ୍ ପାଇଁ ଡଃ ଚନ୍ଦ୍‌କୁ ଏପ୍ରୋଚ୍ କରିଥିଲି । ଆଉ ସେଇ ନିଉରୋଟିକ୍ ଡଃ ଚନ୍ଦ୍, ଯାହାକୁ ମୁଁ ବିଶ୍ୱାସ କରି ଏକଜାମିନର୍ ଏପଏଣ୍ଟ କରିଥିଲି, ସେ ପୁଣି ମୋ ବିରୋଧରେ ରିପୋର୍ଟ କରିଛି । ଛି-ଛି ସିଅର ମେଡ୍‌ନେସ୍ । କିନ୍ତୁ କି ଆଶ୍ଚର୍ଯ୍ୟ କହନ୍ତୁ ତ, ଡଃ ପାକଡ଼ାଶୀ ସେଗୁଡ଼ାକୁ ବିଶ୍ୱାସ କରନ୍ତି । ହଁ ମୁଁ ଏପ୍ରୋଚ୍ କରିଥିଲି ଡଃ ଚନ୍ଦ୍‌କୁ । କ'ଣ ହେଇଗଲା ସେଇଠୁ ? ଡଃ ପାକଡ଼ାଶୀ କ'ଣ କରି ନାହିଁ ? ଡଃ ସେନ୍ କ'ଣ କରି ନାଇଁ ?

କିନ୍ତୁ ଡଃ ପାକଡ଼ାଶୀ ! ରିଏଲି ଆଇ ଫିଲ୍ ସରି ଫର୍ ହିମ୍ । ଲୋକଟାର ଏଭଳି ମୃତ୍ୟୁରେ ଦୟା ହୁଏ ସତେ !

ଡଃ ପାକଡ଼ାଶୀଙ୍କ ପାଇଁ ଆଜି ଶୋକସଭା ।

ଗାନ୍ଧୀଭବନରେ ଶୋକାର୍ତ୍ତ ଜନତା ଜମାଟ ବାନ୍ଧୁଛି ।

[୧୯୭୦]

# ଟାଇଟୁଂ

ସାପୁଆକେଳାର ପେଡ଼ି ଭିତରୁ ବାହାରି ଆସିଥିବା କେଉଁ ବିଷଦାନ୍ତ ଭଙ୍ଗା ଅମାନିଆ ଅଣନିଃଶ୍ୱାସୀ ଅତରଛିଆ ଗୋଖର ପରି ରନ୍ତେଇ ନଈଟା ଏକାଦମ୍‌କେ ସାତ ବାଙ୍କ ବୁଲି ଯେଉଁଠି ଦମ୍‌ମାରି ଅଣ୍ଟା ସଳଖି ପୁଣି ସିରିସିରି ହେଇ ପେଟେଇବା ଆରମ୍ଭ କରିଛି, ଆଉ ବାଲେଶ୍ୱର - ରସଲପୁର ସବୁଦିନିଆ ମଟର ସଡ଼କରୁ କମଳପୁରଠଉଁ କଚା ସଡ଼କଟା ବାହାରି ତରୁଣପଡ଼ା, ନିଳିଜଙ୍ଘା ଦେଇ ଯେଉଁଠି ସେଇ ନଈଟାକୁ ଟପି ଏରସମା ତଳମାଳ ଯାକେ କେଉଁଠି କିଆଝାଡ଼ ତ କେଉଁଠି ଗୋହିରା, ଖଜୁରି ଆଉ କେବେ କେଉଁଠି ଗହଳିଆ ଆମ୍ବତୋଟା ଭିତରେ ଲୁଚିଖେଳି, ପଡ଼ି ଉଠି ବଣିହଗା ପାଟ ଭିତରେ ଉଭାନ ହେଇଯାଇଛି କେଉଁ ହଜିଗଲା ଶୈଶବର ମଳିଛିଆ ସ୍ମୃତି ଖିଅକ ପରି, ଯେଉଁଠି ମଣିନାଗପୁର ଗାଁର ଇଶାନପଟକୁ ମହାପ୍ରତାପୀ ମଣିନାଗେଶ୍ୱର ମହାଦେବଙ୍କ ଶହ ଶହ ବର୍ଷର ପ୍ରାଚୀନ ମନ୍ଦିର ଆଜି କେବଳ ଏକ ଶିଳା ସ୍ତୂପରେ ପରିଣତ ହେବାକୁ ଯାଉଛି ସେଇଠି ନୂଆ କରି ଠିଆ ହେଇଛି ଆଜ୍‌ବେଷ୍ଟସ୍ ଛାଉଣୀକରା ସରକାରୀ ଗ୍ରେନ୍‌ଗୋଲା, କୃଷି ସଂପ୍ରସାରଣ ଅଫିସ୍, ବୈଦ୍ୟୁତିକ ନଳକୂପ ଅଫିସ ଏବଂ କେଇଗଜ ଛାଡ଼ି ଚାଳ ଛାଉଣୀ କରା ମଣିନାଗେଶ୍ୱର ଯୁବକସଂଘକୁ ଲାଗି ଅଷ୍ଟମ ଶ୍ରେଣୀକୁ ସଦ୍ୟ ପାଦ ବଢ଼େଇଥିବା ମଣିନାଗେଶ୍ୱର ମଧ ଇଂରାଜୀ ଓରଫ ଉଚ୍ଚ ଇଂରାଜୀ ବିଦ୍ୟାଳୟ । ମନ୍ଦିର ବାଁ ପଟକୁ ତିନିମୁଣ୍ଡିଆ ମଗଜଭଙ୍ଗା ଜରତୀ-ଜୀର୍ଣ୍ଣ ବୃଦ୍ଧ ପରି ଶୀର୍ଣ୍ଣ କେଇଟା ଓହଳ ପକେଇ ଆସ୍ଥାନ ଜମେଇଛି ଅର୍ଦ୍ଧୋତ୍ପାଟିତ, ପ୍ରାୟମୁଣ୍ଡିତ ଏକ ଶତାବ୍ଦୀ ପ୍ରାଚୀନ ବର - ମଣିନାଗବଟ ଏବଂ ତା'ରି ତଳେ, ସେଇ ଏକଦା - ମହାବୃକ୍ଷର ତଥାପି-ଘନ ଛାୟାକୁ ଆଶ୍ରୟ କରି ତଲବ ତିହାଡ଼ିଙ୍କ ଛଟାବାଡ଼କରା ନଡ଼ାଛିଆଁଣି ଚାହା ଖଟିର କୋଇଲା ଚୁଲି ମାଘୁଆ ସକାଳର ଦିଗହଜା କୁହୁଡ଼ି ଭିତରେ ଅଳସଧୂଆଁର କୁଣ୍ଡଳୀ ଛାଡ଼ି ନିଦ ଭାଙ୍ଗୁଥିଲା ଏକାନ୍ତ କୁଣ୍ଠିତ ହେଇ... ।

ତଲବ ତିହାଡ଼ିଏ କେଇଥର ଖଣ୍ଡିକାଶ ମାରି ଗୋଟାଏ ହୁକରେ କୋଇଲା ଆଞ୍ଚଟାକୁ ଦି' ତିନିଥର ଝାଡ଼ିଦେଇ ଦରଭଙ୍ଗା ତାଳପଙ୍ଖାରେ ଭଲକରି ବିଞ୍ଚିଦେଲେ କେଇବାର । ହୁତ୍ ହୁତ୍ ହେଇ ନିଆଁର କେଇଟା ଲହକା ଜିଭ କୁହୁଡ଼ିରୁ କେଇ ପରସ୍ତ ଅନ୍ଧାରକୁ ନିମିଷକେ ଚାଟି ନେଇ ପୁଣି ବୁଜି ହୋଇଗଲା ଆଞ୍ଚ ଭିତରେ । ସେଇ ନିମିଷକରେ ଚାଳି ଭିତରେ ବସିଥିବା କେଇଟା ମୂର୍ତ୍ତି ଯେମିତି ସ୍ପଷ୍ଟ ହେଇ ଉଠିଲେ ।

ଡିହାଡ଼ିଏ ଆଞ୍ଚ ଉପରେ କୋଚଟ କଳା କେଟିଲିଟାକୁ ବସେଇ ଆହୁରି କେଇବାର ବିଞ୍ଚିଦେଲେ ଆଗନ୍ତୁକମାନଙ୍କର ଉପସ୍ଥିତିରେ କେମିତି ଏକ ବୈଦାନ୍ତିକ ନିର୍ବିକାରତା ଦେଖେଇ । - ଶଃ - ଳା, କି କୁହୁଡ଼ି !

ଚାରିଟା ବାଉଁଶ କିଳା ଉପରେ ପଡ଼ିଥିବା ପଟାଖଣ୍ଡିକ ଉପରେ ତିନିଟା ବିସ୍କୁଟ, ଲଡୁଆ ଆଉ ନଡ଼ିଆକୋରା ବୟାମ ରଖିଦେଇ ଡିହାଡ଼ିଏ ପୁଣି ବିଞ୍ଚିଲେ ଆଞ୍ଚକୁ... 'ଶଃ-ଳା, ନିଆଁ କଣ ତାତୁଛି ଯେ ପାଣି ଫୁଟିବ ?...'

- ତମ ଫୁଟାପାଣି ପିଇବାକୁ ମଣିଷ ବଞ୍ଚିଥିଲେ ହେଲା ହୋ ଡିହାଡ଼ି !

- କି, କ'ଣ ଲେଖାପଢ଼ି ସାରି ଟିକଟ କାଟିଲଣି କି ?

- ସେଇଟା ଆଉ କୋଉ ବାକି ? ଏ ଯଉଁ କୁହୁଡ଼ି ! ଦେଖିଛତ ଗତସନ କୁହୁଡ଼ି ସାଙ୍ଗକୁ କିମିତି ପାଣି । ଆଉ ପୁଣି ଏସନ ଏଇ କୁହୁଡ଼ିକୁ ଯଉଁ ପାଣି ହବ ତାକୁ ସମ୍ଭାଳିଲେ ତ ! - ଶଃ-ଳା, କି କୁହୁଡ଼ି !

ଡିହାଡ଼ିଙ୍କ କେଟିଲିଟା ଏଥର ଡାକ ଛାଡ଼ିଲା । ବାହାରେ କ୍ରମଶଃ ପାତଳ ହଉଥିବା କୁହୁଡ଼ି ଭିତରେ ସୂର୍ଯ୍ୟ ଉଠି ଆସୁଥିଲା ଉପରକୁ ଏବଂ ସେଇ ଆବ୍‌ଛା ଆଲୁଅ ଭିତରେ ଲୁଣାନଈ ରନ୍ତେଇର ଆରପଟ ଯାଏଁ ତରାସି ଉଠୁଥିଲା ଧୀରେ ଧୀରେ !

- ହ-ଅ, ଦୁନିଆ ଚାଲିଛି । କୁହୁଡ଼ି ହବ, ପାଣି ହବ, ରିଲିଫ୍ ବଣ୍ଟା ହବ, ଋଣ ମିଳିବ, ବାବୁ ଭୟା ଆସିବେ, ଯିବେ... ଚାଲିଛି ଦୁନିଆ... । ଡିହାଡ଼ିଏ ଦି'ଟା କଷଡ଼ିଆ କାଚ ଗ୍ଲାସରେ ଚିନି କେଇ ଚାମୁଚ ଆଉ ବାସି ଦୁଧରୁ ଦି ଚାମୁଚା ଲେଖାଁ ଦେଇ କବଟା ଖଣ୍ଡିକରେ ଚାହା ଛାଙ୍କିବା ବେଳକୁ ବିଶୋଇ ରାଉତ ଅତରଛିଆ ପଶିଆସି ଲଣ୍ଠନ ଆଉ ବାଡ଼ିଟା ରଖି ଦଉଁ ଦଉଁ ଅଣନିଃଶ୍ୱାସୀ ହୋଇ କହିଲା - ଦିଅ, ଦିଅ ଆଉ ଗୋଟାଏ କଡ଼ା କରି ଗ୍ଲାସ କର ଡିହାଡ଼ିଏ... ଓଃ, ରାମ ରାମ ।

- କଥା କ'ଣ କିଓ ? ଏମିତି ଅଚାନକ ?

- କଥା ଆଉ କ'ଣ ? ଭାଲୁ ଲାଙ୍ଗୁଡ଼ ତ ଧରିଛୁ । ଏଥର ନିଅ ମଜା... ରାମ, ରାମ...ମଣିଷ ଟିକିଏ ହେଲେ ଶୋଇଥା'ନ୍ତା... ହଇହୋ ଏଗୁଡ଼ା ପୁଣି ଇମିତି ହିଁସୁଆ ? ପାଣିଗୁଡ଼ା ସବୁ ନିଜ ବିଲକୁ ନେଇଯିବେ-- କିହୋ, ସରକାରଙ୍କୁ କ'ଣ ତୁମେ ଏକା ପଇସା ଦେଇଛ ?... ଏଇ, ଏଇତ ମିଶ୍ରାକ୍କା ବସିଛନ୍ତି । ଇଏ କଣ ମିଶ୍ରାକ୍କା, ତୁମେ କ'ଣ ମୂଲିଆକୁ କହିଛ ଟିବଲ ପାଣିଗୁଡ଼ା ସବୁ ତୁମରି ବିଲରେ ମଣ୍ଡେଇବା ଲାଗି ? ତୁମ କିଆରି ଦେଇ ନାଳଟା ଗଲା ବୋଲି କ'ଣ... ରାମ, ରାମ, ରାତିଟା ସାରା ଅନିଦ୍ରା, ତେଇଁକୁ ପୁଣି କେସ୍ ଫୌଜଦାରୀ ଜନାକାରୀକୁ ବି ବଳି । ତୁମର ସେଇ ମୂଲିଆଟାକୁ ସାବାଡ଼ କରିଦେବି ଜାଣିଥା... ଆରେ, କଉଁଠିକା ବାଉରି ଟୋକା ଏଠି ମୁନିବ ଦେଖଉଛି...

ବିଶୋଇ ରାଉତ ହାତକୁ ଗ୍ଲାସ୍ ବଢ଼େଇ ଦେଇ ତିହାଡ଼ିଏ ହାକୁଟି ମାଇଲେ। ଇଃ କଣ ଯେ ହେଇଛି ପେଟଟା ମୋର... ବୁଝିଲ ବହଲୀଏ, ଚାରିଦିନ ହେଲା ରାତିଖିଆ ଛାଡ଼ିଦେଲିଣି। ତେବେ ବି ହେକା ଗୋଟେ ଗୋଟେ ଆସୁଛି ଯେ ନାହିଠୁଁ ଗଳାଯାକେ ପୋଡ଼ି ଦଉଛି... ତେଇଁକୁ ଏଇ କୁହୁଡ଼ିଟା ନା...

- ଦେଖ କଣ ହଉଛି। ଏଯାକେ କଣ ଆରମ୍ଭ ହେଲାଣିକି ? ଖାଲି ହାଓ୍ୱା ବହୁଛି ଜାଣ। ହାଓ୍ୱା ପରେ ବାଦଲ, ବାଦଲ ପରେ ଯାଇ ଅଣଚାଶୀ... ହେଁଃ, ସରକାର ତ ଧୂଆଁବାଣ ଦେଖେଇ ଦଉଛନ୍ତି। କଣ ନା ସୁନା ଫଳିବ... ସୁନା ! ଧାନ ଗୋଟିକେ ସୁନା ଗୋଟିଏ। କିଓ, ଏତେ ସୁନା ଫଳଉଛ, ଅମାର ମରେଇ ଖାଲି ସୁନାରେ ଭରତି କରି ଦଉଛ ! ଏତେବେଳେ କାହିଁକି ନିଅଁଟିଆ ? ସମସ୍ତେ ତ ଦେଖୁଛ ଶୁଣୁଛ ଏଇ ଟାଇଟୁଂ ଚାଷ ଆରମ୍ଭ ହବା ଦିନଠୁଁ କମଳପୁରଠୁଁ ଆରମ୍ଭ କରି ମଣିନାଗେଶ୍ୱର ଲଗାଏତ ବଣିହଗାଯାକେ ସାତଟା ମଉଜାରେ ସାତଶହ କେସ ହେଇନି ? ହେଇତ, କାଲି ନିଳିଜଘା ହରି ପଧାନ ପୁଅ ଆଉ ଚେମେଇ ଖୁଣ୍ଟିଆ ଦିହେଁଯାକ ବେହାଲ ହେଇ ହାସପାତାଳରେ ଶୁକୁ ଶୁକୁ ହଉଛନ୍ତି। ୟା-ପ ଏଇ ହଗୁରା ତୁମ ପୁଅର ଦିମାକଟାତ ତୁମେ ସଭିଏଁ ସେଦିନ ଦେଖିଲ। କିବା କଥାରେ ଏଇ ମିଶ୍ରାକ୍‌କାଙ୍କ ବଡ଼ପୁଅକୁ ମାରିଥିଲା ତ ! ବୁଝିଲ - ଯେଉଁ ଦିନଠୁଁ ଏଇ ମଣିନାଗବଟକୁ ଖଣ୍ଡିଆ କରି ଇଲେଟେରୀ ରନ୍ତେଇ ନଈ ପାର ହେଲାଣି - ମୁଁ ଠିକ୍ ଠଉରେଇଛି - ସେଇ ଦିନଠୁଁ ମଣିନାଗେଶ୍ୱର ଗାଁରେ ଆରମ୍ଭ ହେଇଛି କନ୍ଦଳ... ଦେଖ କଣ ହଉଛି...

ଆପାଦମସ୍ତକ ଆବୃତ କରି ଉଇହୁଙ୍କାଟି ଭଳି ନିର୍ବିକ ହେଇ ଏଯାବତ୍ ବସିଥିବା ମିଶ୍ରାକ୍‌କା ବିଶୋଇ ରାଉତର ସବୁ ଆକ୍ଷେପ, ଅଭିଯୋଗ ଏବଂ କଟୁ ମନ୍ତବ୍ୟକୁ ନୀଳକଣ୍ଠ ପରି ନିର୍ବିକାରରେ ପାନ କରିଯିବା ପରେ ସାମାନ୍ୟ ଗଳା ଖଙ୍କାର ମାରି ମୁଖମଣ୍ଡଳରୁ ଈଷଦ୍ ବସ୍ତ୍ରାପସାରଣ କରି ଅନୁନାସିକ ସ୍ୱରରେ କହିଲେ - ଆରେ ହେ ସାତକଡ଼ି ! କାଲିକା କଥା କିଛି ଶୁଣିଛୁ ?

- କୋଉ କଥା ମ ?

- ମଲା, ଗାଁଟା ଯାକ ହୁଲସ୍ଥୁଲ। ଆଉ ତୁ ପଚାରୁଛୁ କୋଉ କଥା ? ଯଦୁ ପାଢ଼ୀ ପଅରିଦିନ ବଣିହଗାରୁ ସରସ୍ୱତୀ ବିସର୍ଜନ ଦେଇ ଆସିବା ବେଳକୁ ରାତି ହେଲାଣି ଅଧରୁ ବେଶି। ପାଟ ପାଖ ସେଇ ଯୋଉ ଦହିଭଙ୍ଗା ବରଗଛଟା ରନ୍ତେଇକୁ ଘଷି ହେଇ ଓହଳ ଲମ୍ୱେଇଛି... ବନା ପଧାନର ଚାରିମାଣିଆ ଚକଟା ମ ଯୋଉଥିରୁ ଦୁଇଟା କିଆରି ଟାଇଟୁଂ କରିଛି ସିଏ - ଠିକ୍ ସେଇଠି...

- କ'ଣ ଭୂତ ?

ଦୂର୍ ଭୂତ । ତୋ ମୁଣ୍ଡ ଗଣ୍ଡି । ଆରେ କାନ୍ଦଣାରେ । ମାଇପିଟିଏ କାନ୍ଦୁଛି, ଯିମିତି ବାହୁନି ବାହୁନି ।

- ତା ହେଲେତ ନିଶ୍ଚେ ଡାହାଣୀ । ଯଦୁଆନ୍ନା ଡାହାଣୀ ହାବୁଡ଼ରେ ପଡ଼ିଥିଲା ଲୋ । ଇତିମଧ୍ୟରେ ତିହାଡ଼ିଙ୍କ ଦୋକାନ ବାହାର ପଟା ଉପରେ ବସିସାରିଥିବା ବନା ଚମାର ପୁଅ ସନା କହିଲା କଥାଟା ।

- କିଏବେ ତୁ ? ସନାନା ? ଯା - ପ ସର୍ବଜ୍ଞ ଭଳି କଥାଟା କହୁଛି । କିବେ ଦହିଭଙ୍ଗା ବରଗଛରେ ପରା ଠାକୁରାଣୀ ବିଜେ କରିଛନ୍ତି । ମାଜଣା ହୁଏ । କାଳିଶି ଲାଗେ । ସେଠିକି ଡାହାଣୀ ଆସିବ ? ବୁଦ୍‌ବକ୍ କୋଉଠିକାର । ନିଜେ ଠାକୁରାଣୀ କାନ୍ଦୁଛନ୍ତି ବେ । ଚାରିଆଡ଼େ ଖାଲି ଝୁଣା ବାସନା ମହକି ଉଠୁଛି-ବାଟବାସେଲୀ ସାଙ୍ଗକୁ ଖରାଖାଇ, ବାଟମଙ୍ଗଳା ଦି'ଭଉଣୀ ବିଜେ ହେଇଛନ୍ତି - ଯଦୁଆ ଦିହ ତ ଶୀତେଇ ଉଠିଲା । ବିଚରା ଗାୟତ୍ରୀ ଜପି ପ୍ରାଣ ବିକଳେ ଦଉଡ଼ିଛି ।

- କଣଲୋ ସେକଥା କହୁଛୁ । ମ ନିଜ କଥା କହୁନୁ । ମ ଶୋଇବାଘରକୁ ଲାଗି ତୁମର ସେଇ କୋଚିଲା ଗଛ କିଆରିଟା ଯଉଁଠି ତୁମ ବଟୁ କରିଛି ଟାଇଚୁଂ, ରୋଜ ରାତି ଗୋଟାକ ବେଳକୁ ମୁଁ ଶୁଣୁଚି ଗୋଟାଏ ସ୍ତ୍ରୀଲୋକର ବାହୁନା - ଖାଲି ଯିମିତି କହୁଛି - ମୋତେ ବିଷ ଦେଲ, ତୁମ ପତରରେ ବିଷ ପଡୁରେ ନିଅଁଶିଆ ।

- ଆଲୋ, ସେଇଟା ତ ବିଶୁନିଆମା ବାୟାଣୀ । ସବୁବେଳେ ସେଇଆ କହି ବୁଲୁଛି । କହିଲା ସନା ।

- ଦୂର୍ ବେ, ସେଇଟାକୁ ମୁଁ ଚିହ୍ନିନି ? ତା ସ୍ୱର ମୁଁ ଜାଣେନି ? ରାତି ଗୋଟାକ ବେଳକୁ ବିଶୁନିଆମା ଯାଇ ବାହୁନୁଛି ବିଲ ମଝିରେ । ନୁହେଁ ? ସେଇଟା ତ ସପ୍ତାଘରଠିଁ ପଡ଼େ । ସେଠିକୁ କୁଆଡୁ ଆସିବ ? ସ୍ୱୟଂ ଠାକୁରାଣୀ । ଲକ୍ଷ୍ମୀ ଠାକୁରାଣୀ । ମଗୁଶୀର ମାସରେ ଝୁମୁରୁ ଝୁମୁରୁ ହେଇ ନାଚିନାଚିକା ଆସନ୍ତି ବାପଘରକୁ ଛ ମାସ ରହି ମଉଜ କରିବେ ବୋଲି । ତୁମେ ତାଙ୍କୁ ଅଦିନଟାରେ ପୁଣି ବିଲକୁ ନେଲ । ଜହର - ସାର ଦେଇ ଜବରଦସ୍ତି ଗଜା କଲ । ତେଇଁକୁ ପୁଣି ଏ ଯେଉଁ ଏଣ୍ଡ୍ରିନ୍ ବିଷ ପିଚକାରୀ... ଓଃ, ରାମ, ରାମ... ଠାକୁରାଣୀ ହେଲେ ବୋଲି ତାଙ୍କର ତ ପୁଣି ଜୀବନ ଅଛି ? କେତେ ସହିବେ ସିଏ ?

- ଖାଲି ଟିକିଏ ଅପେକ୍ଷା କରିଯା ମିଶ୍ରାବ୍‌କା ! ଦେଖ କ'ଣ ହଉଛି । ଯଉଁଠି ଠାକୁରାଣୀ କାନ୍ଦିଲେଣି ସେଠି ଯାଙ୍କ ଟାଇଚୁଂ ନା ଯାଙ୍କ ସରକାର... ହେଁଃ... ।

ବିଶୋଇ ରାଉତ ଚା' ପି'ସାରି ବିଡ଼ିଟାଏ ଆଞ୍ଚରୁ ଲଗେଇ ଚାହିଁଲା କୃଷି ସଂପ୍ରସାରଣ ଅଫିସର କାନ୍ଥରେ ଲଗା ହେଇଥିବା ଫର୍ଟିଲାଇଜର କର୍ପୋରେସନର ଦି ଚାରିଟା ଅଠାଛଡ଼ା ପୋଷ୍ଟର ଆଡ଼େ । ମାଘୁଆ ଫିରି ଫିରି ପବନରେ ସେଗୁଡ଼ା ଫଡ଼୍

ଫଡ଼୍ ହେଇ ଉଡୁ ଉଡୁ ରହିଯାଉଥିଲେ କେବେ କେମିତି ଥକ୍କା ହେଇ । ଧାନ ଚାଷର କମ ଖର୍ଚ୍ଚ ଓ ଅଧିକ ଅମଳ ପାଇଁ ଫର୍ଟିଲାଇଜର କର୍ପୋରେସନର ୟୁରିଆ, ସୁଫଳା ସାର ଜମିରେ ଦିଅନ୍ତୁ । - ୟା - ପ, ଯେତିକି ସବୁ ଫୁଟାଣି, ଜାଲିଆତି ଆଉ ଭଣ୍ଡେଇ । ଏଗୁଡ଼ାକ ଉନ୍ନତି ନାଆଁରେ କାଙ୍ଗାଳ କରିଦେବେ । କିଏ ଜାଣିଥିଲା ହୋ ଏକଥା ସବୁ ? ମଣିଷ ବେଶ୍ ଥିଲା । ସମୁଦ୍ର ପନ୍ତାରର ମଣିଷଙ୍କ ପେଇଁ ବଢ଼ି, ଜୁଆର ଏବେ କୋଉ ନୂଆ କଥା କି ? ଏମିତି ଗଢ଼ିଆସିଲାଣି ପୁରୁଷ ପୁରୁଷ । ମଣିନାଗେଶ୍ୱର ଗାଁ କେଜାଣି କେଇ ଶହବାର ଭାସିଯାଇ ପୋତି ହେଇ ପଡ଼ିଥିବ ବଣିହଗା ପାଟ ଭିତରେ । ଖୋଳିଲେ ପରସ୍ତ ପରସ୍ତ ହେଇ ସବୁ ବାହାରିବ । ସମୁଦ୍ର ଜୁଆରରେ ଏଇ ମଣିନାଗେଶ୍ୱର ମନ୍ଦିରର ତ୍ରିଶୂଳକୁ ବି କେବେ କେବେ କାଳେ ପାଣି ଛୁଇଁଛି । କିନ୍ତୁ କି ଆଶ୍ଚର୍ଯ୍ୟ ! ତଥାପି ଏଇ ଗାଁଟା ରହିଛି । ମଣିଷ ଆଉ ସମୁଦ୍ରର ଲଢ଼େଇ ଭିତରେ ଏଇ ମଣିଷ ମଶାଣିଚିଆଁ ହେଇ ଯିମିତି ଗୋଟାଏ ମଢ଼ରୁ ଶହ ଶହ ହଜାର ହଜାର ହେଇ ଗଜେଇ ଉଠୁଛି । କି ସାର କିଏ ଦେଉଛି ସେଥିଲାଗି ? ନା କି ପିଚ୍‌କାରୀ କିଏ ଦେଇଛି ? ଏଇ ମାଘୁଆ ହାଡ଼ଭଙ୍ଗା ଶୀତରେ କିଏ ବା ତାକୁ ରାତି ପାହାନ୍ତା ହେଇ ଜଗିବସିଛି ? ଯଉଁ ସନ ଧାନ ଯାଏ, ସେ ସନ ବିରି, ମୁଗ, ସୋରିଷ ଆଉ କନ୍ଦମୂଳରେ ପୂରିଯାଏ ଏଇ ରାଇଜଟା । ଏଇ ରନ୍ତେଇ ନଈ କଡ଼ର ଲୁଣମରା ପଡ଼ିଆରେ ଶୁଖୁଆ ଶୁଖେ ମହଣ ମହଣ । କିସମ କିସମର - ଇଲିଶି, ତୁଆଡ଼ି, ଫିରିକି, ଶିଳା ଆଉ ଭେଳା ଭେଳା ହେଇ ଭାସୁଥିବା ଚୁଙ୍ଗୁଡ଼ିଗୁଡ଼ାକର ସେ ଯଉଁ ଚୁଡ଼ା ଶୁଖୁଆ - ଆଃ, ଏଇ ମାଘମାସିଆ ପୋଇ ଥୋଡ଼ ଆଉ ନୂଆହେଇ ଖୋଳା ହେଇଥିବା ଗୁଆଟିଆ ସାରୁ ସାଙ୍ଗକୁ ଖାଲି ମୁଠାଏ ବୋଲି ଚୁଡ଼ା ଶୁଖୁଆ ପଲମରେ ଏପାଖ ସେପାଖ କରି ଛାଡ଼ିଦେଲେ ସେ ଯୋଉ ମଜା... କି ତେଲ, କି ଘିଅ ହେ ।... ଅଣ୍ଡା ବୋଲି କେହି ଶୁଣିଥିଲା ? ଏଇତ କାଲିପରି କଥା । ସାବ ଆସିବାର ବର୍ଷକ ହେଇଛି । ସେଥର ଯୋର ଜାଡ଼ । ବୁଢ଼ୀଟା ମର ମର ହଉଛି । କହିଲା - ପଇଡ଼ାଝିଅ, ଆଉ ରହିମି ନାହିଁ ଲୋ । ମୋ ପାଞ୍ଜି ଲେଖା ସଇଲାଣି । ଦେ ଦେ ତୋ ହାତର ଚୁଡ଼ାଶୁଖୁଆ ଘାଣ୍ଟରୁ ଟିକିଏ ହେଲେ ଖାଇଥାଏଁ ଶେଷ ବେଳକୁ । ସେଦିନ ସାବ ହାତର ସେ ରାନ୍ଧଣା - ଘାଣ୍ଟ ସାଙ୍ଗକୁ ଇଲିଶି ଶୁଖୁଆ ବେସର ଆଉ ଭୂଇଁ ପୋଡ଼ା ଶିଳାଶୁଖୁଆରେ ରସୁଣ, ବଡ଼ି, କଞ୍ଚାଲଙ୍କା ପକେଇ ସେ ଯେଉଁ ଚଟୁଣି, ତା ସାଙ୍ଗକୁ ବିରି ଡାଲି... ଶଃ -ଳା... ବିଶୋଇ ରାଉତ ଗଢ଼ିଆସୁଥିବା ଲାଲ କେଇ ଠୋପାକୁ ବଡ଼ ସନ୍ତର୍ପଣରେ ଚାଟିନେଇ ଖୁବ୍ ଜୋର୍‌ରେ ଦମ୍ ନେଇ ଜବ୍‌ବର କଳେ ଧୂଆଁ ଛାଡ଼ିଦେଲା । ମଣିଷ ପାଟିରେ ଛତୁ ଫୁଟିଗଲା ହୋ ! ସେଇ ସାବ ରହିଛି, ସେଇ ମାଘ ବି ରହିଛି । ଦିନଗୁଡ଼ା ସତେ କୁଆଡ଼େ ସବୁ ହଜିଗଲା । ସାରୁ ବୁଦେ କି ଉଙ୍କେ ପୋଇ ଥୋଡ଼ ସାତ ସପନମିତି ହେଇଗଲା ଏଇ ଗାଁରେ । ଶେଷକୁ କ'ଣ ନା ଏରସମା ଗୋଖାଏ ଧଇଲେ ରନ୍ତେଇ ନଈକୁ ନିଲାମ...

ବରଷକୁ ଦେବେ ପାଞ୍ଚହଜାର ଟଙ୍କା ସରକାରଙ୍କୁ । ମାଛ ତ ମାଛ, ସେ ଶଳେ ପାଣି ବି ଛୁଇଁ ଦେଲେ ନାହିଁ । ଆଉ ଇଏ କଣ ନା ଆସିଲେ ଝିଣ୍ଟିକା ମାରି ବଣି ପୋଷିବାକୁ - ଚାଷ କର, ଋଣ ନିଅ, ଦେଶ ଆଗଉଛି । ଆମେ ଆକାଶକୁ ଜିତିଲୁଣି, ଜିତିବୁ ସମୁଦ୍ରକୁ, ଜିତିବୁ ଇନ୍ଦ୍ରକୁ, ମହାମାରୀ, ଦୁର୍ଭିକ୍ଷ ସବୁ ଜିଣିବୁ ଆମେ - ଜାପାନୀ ପ୍ରଣାଳୀ ଶିଖ, ରୁଷିଆ ପ୍ରଣାଳୀ ଶିଖ, ଜମିରେ ଦିଅ ସୋନା ସାର, ଘରକୁ ବୁହ ସୁନା ଭାର... ଶଃ...ଳା ମୁଫତଖୋର କାହାଁକା, ଖାଲି ଡାକି ବଜେଇ ଦେଶଟାକୁ ଉଠେଇ ଦବରେ ! ବିଶୋଇ ରାଉତ ପୋଡ଼ା ବିଡ଼ିଟାକୁ ଫୋପାଡ଼ି ଦେଇ ଉଠିପଡୁଥିଲା ବାଡ଼ିଟାକୁ ଧରି -

- କିରେ ବିଶୋଇ, ଅସଲ ବେଳକୁ ଉଠିପଡ଼ିଲୁ ଯେ । କହିତ ଦେଇଗଲୁ ଯାହା ମୁହଁକୁ ଆସିଲା । ମୁଁ ହେଲାକୁ ସହିଗଲି । ବୁଝିଲୁ, ଆରେ, ସହେ ଯିଏ ବଡ଼ଲୋକ ସିଏ । ତୁତ ଜାଣୁ ଆମ ଘର କଥା । ଏସବୁ ମୁଁ ବୁଝେ ? ବଟୁଆ ମୋ ମୁହଁରେ ବିଷ୍ଠା ଦେଲାରେ - ଏଇ ମୋ ଅନ୍ତରର କଥା କହୁଛି - ଯେତେ ମନା କଲି ମାନିଲା ନାହିଁ । ତାଇଚୁଂ କଲା । ଶେଷକୁ ଘରେ କୁକୁଡ଼ା ପଲ ଆଣି ପୂରେଇଲା - ଯା-ପ, ପଠାଣ ଘର କଲା । ବୁଢ଼ାକାଳେ ଏଇ ଅଶୀ ବରଷରେ ମୁଁ ଏସବୁ ସହିଛି । ଘରେ ଖାଲି କୁକୁଡ଼ା ଘୁଅ, ଅଣ୍ଡା କାତି । ଉକାଳ ଉଠୁଛି । କହିବି କ'ଣ ? ସକାଳୁ ସକାଳୁ ଏଇ ଜାଡ଼ରେ କଣ ଶୋଇ ହଉଛି ? କୁକୁଡ଼ାଗୁଡ଼ା ଫୁଡ଼୍ ଫାଡ଼୍ ହେଇ ରାତି ଚାରିଟା ବେଳୁ ଉତ୍ପାତ କରୁଛନ୍ତି ଯେ ତାଙ୍କ ଗନ୍ଧରେ ଆଉ ଶବ୍ଦରେ ନାକ କାନ ଫାଟି ଯାଉଛି ବାପ ! ଭୋର ଭୋର ଉଠି ଏଇଠିକି ଦଉଡୁଛି । ଏଇ ତିହାଡ଼ିଙ୍କ ପାଖରେ ଟିକିଏ ବସିଲେ ଯିମିତି ମୋର ଶାନ୍ତି । ଆରେ ବଟୁଆ ମୋତେ କଣ କହିଲା ଜାଣୁ ? କହିଲା, ପାଣିରେ ତ ସବୁ ଗଲା - ମୋ ଛୁଆ ଖାଇବେ କ'ଣ ? ତାଇଚୁଂ ଚାଉଳର ଭାତ ଆଉ କୁକୁଡ଼ାଅଣ୍ଡା - ସରକାର ଯୋଉଠି ଯୋଗଉଛନ୍ତି ସେଠି ଆମର ଚୁପ ହେବାଟା ବୋକାମି । ଭଲ ବାବା, ଯାହା ଇଚ୍ଛା କର । ଆମ ବେଳ ତ ଗଲା । ଏବେ ତୁମ ବେଳ ଆସିଛି । ବୁଝିଲୁରେ ବିଶୋଇ ସେ ସବୁ କଥା ମୋତେ କାହିଁକି ? ଯା କହିବୁ ବଟୁଆକୁ ।

- ପାଣିଟା କଣ ଆଜି ହେଇଛି ଲୋ ମିଶ୍ରାକ୍‌କା ! କୋଉକାଳରୁ ପାଣି ଏ ଖଣ୍ଡକକୁ ମଶାଣି କରିଦେଇଛି । ହେଲେ ଇମିତି ଜାତିଗୁଡି କେବେ ନେଇଛି ? କ'ଣ ନା ତାଇଚୁଂ ଚାଉଳ ସାଙ୍ଗକୁ କୁକୁଡ଼ାଅଣ୍ଡା ! ବାଃ ସେଇ ଚୁଚୁନ୍ଦ୍ରା, ଚେମେଣିଆଖିଆ ଜାପାନୀଙ୍କ ସାଙ୍ଗକୁ ହେଡ଼ାଖିଆ ପଠାଣ । ଭଲ ଯୋଟକ ହେଇଛି ଏକା... ହଉ ହଉ, ଦେଖ କଣ ହଉଛି ।

- ଆରେ ଆଜି କ'ଣ ଦେଖିଲି ଜାଣୁ ? କୁକୁଡ଼ାଗୁଡ଼ାକ ତ ଶୋଇ ଦଉ ନାହାନ୍ତି । ରାତି ଶେଷ ହେଲାଣି । ବାହାରକୁ ଆସି ଦେଖେଁତ ଆକାଶଟା ହାଲୋଳମୟ । ମୋ ଅକଲତ ଗୁଡୁମ୍ । ଉତ୍ତର ଦକ୍ଷିଣ ହେଇ ଯୋଉ ତାରା ଦାଣ୍ଡିଟା, ତାରି ଉପରେ

ଚାଲିଛନ୍ତି ଯେମିତି ଦି'ଜଣ ମଶାଲ ଜାଳି ଆଗେ ଆଗେ, ଆଉ ପଛରେ ମାଲଭାଇ ପରି କେଇଜଣ ଗୋଟାଏ ମୁର୍ଦ୍ଦାର କୋକେଇ କାନ୍ଧେଇ । ମୁଁ କଣ ଆଉ ହୋସ୍‌ରେ ଅଛି ? କେତେବେଳେ ଯେ ଭିତରକୁ ଆସି କବାଟ ଦେଇଛି...

- ମାନେ ?'

ବିଶୋଇ ରାଉତ ପୁଣିଥରେ ବିଡ଼ିଟାଏ ଆଞ୍ଚରୁ ଲଗଉଥିଲା । -କଥାଟା ତ କିଛି ବୁଝିହେଲା ନାହିଁ ।

-ଏଇ କଥାଟାତ ଏମିତି କେଇବାର ଶୁଣାଗଲାଣି ମିଶ୍ରେ । ସତ କି ମିଛ ଜାଣେନା । ସେଦିନ ଦୋଳପାଟଣାରୁ କିଏ ଦି'ଜଣ ଯାଉଥିଲେ ଏରସମା । ଠିକ୍ ଏଇକଥା କହୁଥିଲେ ଏଠି ଚା ପିଉ ପିଉ ।

- କି, ଏଇ କମଳପୁର ଯୋଗୀ ବାରିକ ତ ନିଜେ ଦେଖିଛି ଦି'ବାର ।

- ବୁଝ, ବୁଝରେ ସବୁ । ତମର ତ ସବୁ ବେଶି ବୁଦ୍ଧି । ଆମେ କହିବୁ କ'ଣ ? ମାନେ କହିଦେଲେ ତ କଥାଟାର ମାନ ଚାଲିଗଲା । ଉଠ୍‌ରେ ସାତକଡ଼ି ଯିବୁତ ଚାଲ୍ । ଦେଖେଁ ସେଇ ପଠାଣ ପଲାରେ କେତେଦିନ ଆଉ ଏ ପିଣ୍ଡ ରହୁଛି ?

ମିଶ୍ରେ ଥୁ ଥୁ କରି ଦି ଲେଣ୍ଡା ଖଙ୍କାର ଛାଟି ବାଡ଼ିଧରି ଚାଲିଗଲେ ଟମ ଟମ ହେଇ ଆହତ ଅଭିମାନରୁ ମୁଠା ମୁଠା ପଛରେ ଫିଙ୍ଗି ଫିଙ୍ଗି ଏବଂ ପଛେ ପଛେ ବହଳୀଏ ବି ଉଠିଗଲେ ଯେମିତି ସେଇ ଅଭିମାନରୁ କେଇ ମୁଠା ସାଉଁଟି ନେବା ପାଇଁ । ତିହାଡ଼ିଏ ମଟରଆଳୁ ଭୋଗନିରେ ନଡ଼ିଆକୋରା ଦଉଁ ଦଉଁ କହିଲେ - ହ, ଦୁନିଆ ଚାଲିଛି । ଯିବାଆସିବା ଲାଗିଛି ।

ବିଶୋଇ ରାଉତ କିନ୍ତୁ ବାଟ ଭୁଲିଯାଇଥିଲା ଯେମିତି । ବାଡ଼ିଟାକୁ ଡେରିଦେଇ ଲଥ୍ କିନା ବସିପଡ଼ିଲା ବାହାର ପଟା ଉପରେ ଝୋଲାମରା ହେଇ ସିଧା ରନ୍ତେଇ ଆଡ଼କୁ ମୁହଁ କରି । ଖରା ପାତଳ ହଉଛି । ରନ୍ତେଇର ପୁନେଇଁ ଜୁଆର ଛାଡ଼ିଛି । ଗୁଆଏ ଜାଲ ମତଉଛନ୍ତି । ଆଃ, ଇଲିଶି, ବେକ୍‌ଟି ଆଉ ତୁଆଡ଼ି । ମାଘୁଆ ଖରାରେ ବିଲାତୀ ଅମଳର ରୁପା ସୁଉକି ପରି କାତିଗୁଡ଼ା ତାଙ୍କର ଚକ୍‌ମକ୍ କରୁଥିବ ଏଇ ଖରାରେ । ବାଃ - ବାଃ, କି ତେଜ ସେଗୁଡ଼ାକଙ୍କର । ଜାଲକୁତ ଖାଲି ଦୁଲମାଦଲ କରୁଥିବେ । ଦୁଣ୍ଡୁରି ଭିତରେ ତାଙ୍କୁ ସମ୍ଭାଳିବା କ'ଣ ସହଜ କଥା ? ହେଲେ ପକ୍‌କା ଧରାଳିଙ୍କୁ ଫାଙ୍କି ଦେବେ ? ୟା'ପ ଖାଲି ବାଡ଼ିରେ ପିଟି ପିଟି ସାବାଡ଼ କରିଦବା କଥା । ବାପା ଏଇ ଭଟ୍ଟ ଦିନେ ଦଶ କେଜି ବେକ୍‌ଟି ଧରନ୍ତିଟି ! ଆଉ ଛୁଆ ସବୁ ମୁଣ୍ଡଳି ଜାଲ ନେଇ ଖାଲି ଛାଣି ଆଣୁଥିବେ ଚୂନା ଚୁଙ୍ଗୁଡ଼ିକୁ । କେବେ କିମିତି ତୁଆଡ଼ି କି ଶିଳା ବି ପଶି ଆସନ୍ତି ଅତରଛିଆ ହେଇ । ଏଇତ ବାଉରି ସାହିର ଗୋଟାକେତେ ମେଞ୍ଚଡ଼ ମୁଣ୍ଡଳି ଦେଇ ଦରାଣ୍ଡୁଛନ୍ତି । ୟା'ପ, ୟାଙ୍କରି ତ ଯୁଗ ହେଇଛି । ହରିଜନ ହେଇଥିଲେ ।

ଏବେ ହେଲେ ସରକାର ଜନ । ଆମେଗୁଡ଼ା ନା ଏପାଖ ହେଲୁ ନା ସେପାଖ ? ଦିଅନ୍ତେ ଭଲା ଏଇ ଖଣ୍ଡେଇତଗୁଡ଼ା ହରିଜନରେ ନାଁ ଲେଖେଇ । ବଗଟାଏ କ'ଣ ଗୋଟାଏ ଶିକାର ଧରି ଜୀବନ ସଂଗ୍ରାମର ଅପ୍ରତ୍ୟାଶିତ ବିଜୟରେ ଉନ୍ମତ୍ତ ହେଇ ଉଡ଼ିଆସିଲା ମଣିନାଗ ବଟ ଉପରକୁ ଆଉ ପୁଞ୍ଜେ କୁଆ କଜିଆ ଲାଗିଗଲେ ହଠାତ୍ ତା' ମୁହଁରୁ ଖସିପଡ଼ିଥିବା ସେଇ ଶିକାରଟାକୁ ଦଖଲ କରିବା ଲାଗି । ସେଗୁଡ଼ା ଫଡ଼ଫାଡ଼୍ ହେଇ ମାଡ଼ିଆସିଲେ ଦୋକାନ ଭିତରକୁ । ତାଙ୍କ ହାୱାରେ ଦୋକାନ କଡ଼କୁ ପଡ଼ିଥିବା କେତୁଟା ଅଇଁଠା ଶାଳପତ୍ର ବିଞ୍ଚି ହେଇଗଲେ ଏପାଖ ସେପାଖ । -ଶଃଳା କ'ଣ ହଉଛନ୍ତି ଏଗୁଡ଼ାକ, ହାଃକ୍କୋ । ତିହାଡ଼ିଏ ତାଳି ଚାପୁଡ଼ା ମାରି ହୁରୁଡ଼େଇ ଦେଲେ ସେଗୁଡ଼ାଙ୍କୁ । ଜିଦ୍‌ଖୋର କୁଆଗୁଡ଼ା କିନ୍ତୁ ନଛୋଡ଼ବନ୍ଦା । ସେମିତି ତଡ଼ାତଡ଼ି ହେଇ ଉଡ଼ିଗଲେ ଗଛ ଉପରକୁ ଏବଂ ଶିକାର ହାତରୁ ଖସିଯିବା ପରେ ନିରାଶ ହେଇ ବସିଥିବା ବଗଟା ବି ତରକି ଯାଇ ଉଡ଼ି ପଳେଇଲା ବିରକ୍ତିର କେଇଟା ସ୍ଲୋଗାନ୍ ଦେଇ ପୁଣି ସେଇ ରନ୍ତେଇ ଆଡ଼କୁ ନୂତନ ଶିକାରର ସନ୍ଧାନ କରି ଏବଂ ଏଇ ଆକସ୍ମିକ ବିପ୍ଳବର ଅସହ୍ୟ ତାଡ଼ନାରେ ବୃଦ୍ଧବଟର କେଉଁ ସ୍ଥବିର ଶାଖାରୁ ଖସିପଡ଼ିଲା କେତୋଟି ଜୀର୍ଣ୍ଣ-ଶୀର୍ଣ୍ଣ ପତ୍ର ଅସହାୟ ଭାବରେ ଇତସ୍ତତଃ ହେଇ ।

ବିଶୋଇ ରାଉତ ଆଖି ଫେରେଇଲା କୃଷି ସଂପ୍ରସାରଣ ଅଫିସ ଆଡ଼କୁ । ୟୁରିଆ ଓ ସୁଫଳା ସାରର ବିଜ୍ଞାପନଟା କେତେବେଳେ କେଜାଣି କାନ୍ଥରୁ ଖସିଯାଇ ତଳେ ପଡ଼ି ସୁଲସୁଲିଆ ପବନରେ ରହି ରହି ଛଟପଟ ହେଉଛି ଦରମଲା ବେକ୍‌ଟିର ଲାଙ୍ଗୁଡ଼ଛଟା ପରି । କିନ୍ତୁ କାନ୍ଥରେ ତଥାପି ଲାଗିରହିଥିବା ଅଧିକ ଅମଳକ୍ଷମ ଧାନ ତାଇଚୁଂର ବିଜ୍ଞାପନଟା ଯେମିତି ବିଜୟ ବାନା ଉଡ଼ଉଛି । ଗହଳ ଧାନ କିଆରିରେ ପଟକା ପଟକା ପତ୍ର ସନ୍ଧିରୁ ଦେଢ଼ହାତ ଉଚ୍ଚର ସୁନାଗଣ୍ଡିଆ କେନ୍ଦାଟିମାନ ବାହାରି ଯାଇଛି ଉପରକୁ । ଏକ ନମ୍ବର ନେଟିଭର ଗେଟି ଗେଟି ଧାନଗୁଡ଼ା ଖାଲି ଖୁନ୍ଦି ହେଇଯାଇଛି ଛିଞ୍ଚା ମାରି । ନଡ଼ାଗୁଡ଼ା ଶୁଖି ଆସୁଛି ଅଗଆଡ଼ୁ । ପାଚିଯାଇଥିବା ଧାନଗୁଡ଼ାକରେ ସଇ ସୁନାର ରଙ୍ଗ ଚହଟି ଉଠୁଛି । ମାତ୍ର ଚାରିମାସର ବେଉଷଣରେ ଏକର ପିଛା କୋଡ଼ିଏ କୁଇଣ୍ଟାଲ ଧାନ - ମାନେ ପଚାଶ ମହଣ - ମାନେ ପଚିଶ ବସ୍ତା । ସାତ ପ୍ରାଣୀ କୁଟୁମ୍ବକୁ ପକେଇ ଡକେଇ ଖାଇଲେ କେତେ ଦିନ ଯିବ ? ଆଃ, ସାବ୍‌ଜା ଛନ୍‌ଛନ୍ ମଞ୍ଜ କଦଳୀପତରରେ ଗରମ ଗରମ କଇଁଫୁଲିଆ ଚାଉଳର ଭାତ ସାଙ୍ଗକୁ ଚେକା ଚେକା ତେଲିଆ ବେକ୍‌ଟି ମାଛର ନାଲ ନାଲ ଝୋଳ... । ବିଶୋଇ ରାଉତର ବିଡ଼ିଟା କେତେବେଳେ ଜଳି ଜଳି ମୁଣ୍ଡି ପର୍ଯ୍ୟନ୍ତ ଚାଲିଆସିଥିଲା । ଚେଁକା ଲାଗିଯିବାରୁ ଅତରଛିଆ ବିଡ଼ିଟା ଫୋପାଡ଼ି ଦେଇ କହିଲା, ବୁଝିଲ ତିହାଡ଼ିଏ, ତିନି ପା ଜମିକୁ ଗଲାଣି ସାତଶ । ଆହୁରି ଅଛି ୫୦ କେଜି ୟୁରିଆ, ଏଣ୍ଡ୍ରିନ୍ ପିଚକାରୀ । ତେଇଁକୁ ବଛାଠଉଁ ଅମଳଯାକେ ମୂଳ ଓ ରାତି ଉଜାଗର । ସରକାର ବାହାଦୁର ଏଣେ

ଋଣ ଦେଲେ ତ ତେଣେ ବଢ଼େଇଲେ ମଜୁରି । ଚାରିଟଙ୍କାରୁ କମ୍ ଦେଲେ ସିଧା ହାଜତ ଦେଖ । ଦେଖୁଛତ ଏଇ ମେଅଁଡ଼ଗୁଡ଼ାଙ୍କର ତେଜ - ଶଳେ ନ ଖାଇବେ ପଛେ ପେଟରେ ଓଦାକନା ଦେଇ ଶୋଇବେ, ଆଉ ଦେଖେଇବେ ଭାଉ । ହଁ ବେଳ ତ ସେଇଆ । ସରକାରଙ୍କ ଧରମପୁଅ ଯେତେବେଳେ... ଓଃ, କି ଯୁଗ ହେଲା ଇଏ ! କ'ଣ ନା ଲୋକସଂଖ୍ୟା ବଢ଼ିଗଲେ । କିଓ ଲୋକସଂଖ୍ୟା ବଢ଼ିଲେ କିମିତି ? ମୋ ଛୁଆବେଳେ ଯଉଁ ସାତଜଣକୁ ଆଜି ବି ସେଇ ସାତଜଣ । ଲୋକ ଆସୁଛନ୍ତି ଯିମିତି ଯାଉଛନ୍ତି ସେମିତି । ହେଲେ ଇମିତି ଅଭାବ ସେତେବେଳେ ଥିଲା ?

- ଚକ ଗଡ଼ିଚାଲିଛି ହୋ ରାଉତ । କାଲି ଆମେ ଥିଲେ ସରକାରଙ୍କ ଧରମପୁଅ । ଆଜି ଆମେ ଗଲୁଁ, ଆସିଲେ ସିଏ... ଫେର୍ ଦେଖ କ'ଣ ହଉଛି । ଦୁନିଆଟା ତ ତମ ଆମଠୁ ସରିଯାଉନି । ଏଇ ରନ୍ତେଇର ଜୁଆର ଭଟ୍ଟା ସାଙ୍ଗକୁ ଦୁନିଆଟାର ବି ଯିବାଆସିବା । ଏମିତି କାଳକୁ କାଳ । ଲାଗିପଡ଼, ଲାଗିପଡ଼ । ଅଭିମାନ ମାରି ବସିଗଲେ କିଏ ଶୁଣୁଛି ତୁମ କଥା ?... ବିଲଆଡ଼େ ଯିବ ନା କ'ଣ ?

- ବିଲକୁ କ'ଣ ଜମି ଚିହ୍ନିବାକୁ ଯିବି ? ଦେଖୁଛତ ବେଳ ଆସି ହେଲାଣି ଆଠଟା । ମୂଲିଆଙ୍କର ଦେଖାଅଛି ଏଯାକେ ? ଏଙ୍କ ମଗଜ ଦେଖ ।

ଅବରୁଦ୍ଧ ଆକ୍ରୋଶରେ ଫାଟିପଡ଼ି ବିଶୋଇ ରାଉତ ଠେଙ୍ଗାଟା ଧରି ବାହାରି ଯାଉଁ ଯାଉଁ ଆଉ ଥରେ ଚାହିଁଦେଲା କୃଷି ସଂପ୍ରସାରଣ କେନ୍ଦ୍ରର କାନ୍ଥ ଆଡ଼େ । ସୁନାଗଦା ଭଳି ଜବର ଦି'ଗୋଛା ଧାନ ମୁଣ୍ଡେଇ ବିଜ୍ଞାପନ ଭିତରୁ ବାହାରି ଆସୁଛନ୍ତି ଗେରସ୍ତ ଭାରିଯା ଦି'ଜଣ । କୁନ୍ଦିଲା କୁନ୍ଦିଲା ଦିହ ସାଙ୍ଗକୁ ପାଟିରେ ପାଟିଏ ଲେଖା ହସ ଆଉ ଆଖିରେ ଆଖିଏ ଲେଖାଁ ସପନଭରା ଚାହାଣି । ବିଶୋଇ ରାଉତ ମାଟିରେ ଠେଙ୍ଗାଟାକୁ କୁଟିଦେଇ ପାଟି କରି ଉଠିଲା, ଶଃ'ଳା, ଯେତିକି ସବୁ ଭଣ୍ଡାମି, ଜାଲିଆତି, ମିଛ, ଡାହା ମିଛ... ।

[୧୯୭୮]

# ଆଗନ୍ତୁକ

ରୀନା ସନ୍ତୁଳାଟା ଅଧାରୁ ଓହ୍ଲେଇ ଆଣି କାନ ପାରିଲା, ଆସିଲେ କି ? ବାହାର ପଟ ଜଞ୍ଜିରଟା ଯେମିତି ଝଣଝଣ ହେଲା । ତା'ପରେ କବାଟରେ ଦୁଇ ତିନିଥର ଠକ୍ ଠକ୍ ଆବାଜ । ଏଇ ରୋଷେଇଘରଟା ଦାଣ୍ଡଘରଠାରୁ ଏତେ ଦୂର ଯେ ବାହାରେ ଯଦି କିଏ ପାଣି ଟୋପେ ପାଇଁ କି ଆଉ କ'ଣ ପାଇଁ ଡାକି ଡାକି ମରିବାଯାଏ ତୁମକୁ ଶୁଭିବ ନାହିଁ । କେମିତି ଶୁଭନ୍ତା ଆଉ ? ରାନ୍ଧଣାର ପୁଣି ଚେଁ ଟାଁ ତ ଅଛି । ଅଗଣାଟା ପାରିହେଇ ବଡ଼ ଶୋଇବାଘରଟାକୁ ଗଲେ ଯାଇ କିଛି ନା କିଛି ଶୁଣିହବ । ସେଇଥିପାଇଁ ତ କହିଲି ପିଲାଟିଏ ନ ହେଲେ ମୁଁ ଚଳିପାରିବି ନାହିଁ । ସତରେ କ'ଣ ଚଳାଯାଏ ? ରନ୍ଧାବଢ଼ା ଦବାନବାଠୁଁ ଦାଣ୍ଡପଟୁ ପାଣିଅଣା, ବାସନ ମଜାଯାଏ । ସେଥିରେ ପୁଣି ଅଧବେଳେ କିଏନା କିଏ ଜଣେ ଆସି ବାପାଙ୍କୁ ଖୋଜିବ । ପୂରା ବଜାର ନ ହେଲେ ବି ସହର ଜାଗାତ ! ନାଃ । କେଇ ନୁହେଁ । ପବନଟା ବାଢ଼େଇ ହେଲାକି କଣ । କ'ଣ ହଉଛିମ ଏଇ ପବନଟା । ତିନିଦିନ ହେଲା ରଖେଇ ଦଉ ନାହିଁ । ଦିନର ଏଇ ପବନ ରାତିକି ଆଣୁଛି କୁହୁଡ଼ି । ଆମ୍ବଗଛ ଗୁଡ଼ାକରେ କି ବଉଳ ହେଇଥିଲା ସତେ ! ଓଃ କୁଢ଼ କୁଢ଼ ! ଏଇ ଗେଟ୍ ପାଖ ଗଛଟାରେ ଯେତେ ବଉଳ ହେଇଥିଲା ନା ଆମ୍ବ ହେଇଥିଲେ ଗଛଟା ନିଶ୍ଚୟ ଭାଙ୍ଗି ପଡ଼ିଥାନ୍ତା । ତିନିଟା ଦିନ କୁହୁଡ଼ିରେ ସବୁ ପୋଡ଼ି କଳାକାଠ ଅଙ୍ଗାର !

ରୀନା ପୁଣି କରେଇଟାକୁ ଚୁଲିରେ ବସେଇଲା । ଢଙ୍କା ଖୋଲି ଦି ତିନିଥର ଖଡ଼ିକାରେ ଏପଟ ସେପଟ କରିଦେଲା । ଆଳୁ ଫୁଲକୋବିର ସନ୍ତୁଳା, ଆଳୁଦମ୍, ବିଲାତିବାଇଗଣ ଖଟା, ପିଆଜ, ଅଦା ଆଉ ଭୃସୁଙ୍ଗା ପତ୍ର ଫୁଟଣ ଦେଇ ରାଗୁଆ ରାଗୁଆ ଉପମା ଆଉ ଖାସ୍ତା ପରଟା... ଆଃ, କିଏ ମ ସେଇ ମାନନୀୟ ଅତିଥି ? ଖାଲି ବରାତି ଦେଇଦେଲେ ତ ହେଲା ! ସେଥିରେ ବୋଉ କହିବ କ'ଣ ନା - ମେଟ୍ରିକ ପଢ଼ିଲୁ ବୋଲି ରାଜ୍ୟ କିଣି ନେଲୁ କିଲୋ ? ଏଡ଼େ ଟୋକୀଟେ ହେଇଛୁ ! ତିନିଜଣଙ୍କର କାମ । ସେତକ ହବନି ଯେ ଆହୁରି ଜଣେ ଚାହୁଁଛୁ ? ପୁଣି ଭାଇଟେ ଅଛି ବୋଲହାକ କରିବାକୁ । ବାପର ରୋଜଗାର ଥିଲେ କିଜାଣି ରାଜରାଣୀ ହେଇ ବସନ୍ତୁ । ନାଃ, ରାଜରାଣୀ କାହିଁକି ହୁଅନ୍ତୁ ? ଏଇନେ ତୁମ ପାଳି ପଡ଼ିଛି । ଆମକୁ ପୋଇଲୀ କରି ଗାଦିରେ ବସି ରାଜୁତି କରିଯାଅ । ଏମାନେ ଭଲା କାହିଁକି ମା ହୁଅନ୍ତି ? ଯେମିତି ଟାକି ବସିଥାନ୍ତି ଝିଅଟା କେମିତି ପାରି ଉଠିଲେ ସବୁ ମାରିଯିବେ ତା' ପିଠିରେ । କେତେ

ପୁଣି ହିତ କଥା - ଆହା ମରିଯାଉଥାଏଁ । ଏଠି ନ କଲେ ଦିହରେ ଯିବ କେମିତି ମ ? ସେଠି କଣ ବୋଉ ଖୁଡ଼େଇଙ୍କ ନାଁ ପକେଇବ ? କିଏ ମଲା ଗଲା ସେଥିରେ କି ଯାଏ ? ତୁମ ନାଁଟା ତେବେ ଆଗ । କପାଳଟିଏ ତ ! ତୁମେ କାହା ନାଁଟା କେମିତି ପକଉଛ ସେଟା ଯେମିତି ଆମକୁ ଜଣା ନାହିଁ । କଥା କହିବାରେ ଏବେ କୋଉ ଖଟଣି ପଡୁଛି ଯେ ! ଏଡ଼େ ମୁଣ୍ଡ ଯଦି ଥିଲା ବାପା ଦେଲେ ନାହିଁ ହଜାରେ ଟଙ୍କିଆ ସାଙ୍ଗରେ ବାହା ? ବାପା ବୋଲି ଲୋକଙ୍କ ପାଖରେ ସବୁ ଚଳିଯାଉଛି । ଆଉ କାହାରି ପାଖରେ ଯା'ନ୍ତା ସବୁ ଇଏ ? ସୁନୀତାକୁ କଣ ଟିକିଏ ସେଦିନ ଆଡ଼କରି କହିଦେଲେ ଯେ ତା' ବୋଉ - ବା - ବା, ମାସେ ଯାକ ବାପା ତା'ର ମୁହଁ ଫିଟେଇ ନାହାନ୍ତି ତାଙ୍କୁ କି ତାଙ୍କ ହାତରୁ ପାଣି ଟୋପେ ବି ଛୁଇଁ ନାହାନ୍ତି । ଠିକ୍ ତ ! ତୁମେ ଦଉଛ ନା ନଉଛ ? ଯିଏ ଦବାଲୋକ ତାଙ୍କୁ ତ ବାଧୁ ନାହିଁ । ତମକୁ କିଆଁ ଏତେ ବାଧୁଛି ମ ? ସୁନୀତା ବାପା କୋଉ ଏବେ ଅଫିସର ଯେ ! ସିଏ ତ ପୁଣି ଝିଅକୁ କଲେଜକୁ ଦେଲେ ! ପଢୁଛି ପଢୁ ! କେତେ ବାଟ ଯାଉଛି ଯାଉ । ଇଏ କହିବ କ'ଣ ନା କାହିଁକି ସେଇ ପରଘରୀଗୁଡ଼ାକ ପିଛା ପଇସା ସାରୁଛ ମ ? ଯେତିକି ହେଲା ସେତିକି, କି କାହିଁକି ? ତୁମ ବାପା ଖୁଡୁତାମାନେ ଏଠି ଆସି ଗଛ ଲଗେଇ ଯାଇଥିଲେ ତୁମେ ସବୁ ବସି ଫଳ ଖାଇବ ବୋଲି ନୁହେଁ ? ଆମେ ପରଘରୀ । ତୁମରି ତେବେ ଘରଟାଯାକ ସବୁ । ବା -ବା ସେଦିନ ସେ ମେକ୍ସିଟା ଦେଖି ସେ କ'ଣ ନ ହେଇଛି ? ଦି'ମାସ ହେଲା ଲଗେଇଛି ଗଲା ଆଇଲାକୁ ବ୍ଲାଉଜ ଖଣ୍ଡେ ଆଣି ଦବାପାଇଁ । ସେଥିକୁ ହଁ ହଁ ନାହିଁ ନାହିଁ କରୁଛ । ଆଉ ଝିଅ ସାନ୍ତାଣୀଙ୍କ ବେଳକୁ ତ କିସମ କିସମର ଫେଶନ, ଷ୍ଟାଇଲ । ହଁ ହଁ ନ ଦବ କାହିଁକି ? ଝିଅ ପିନ୍ଧି ଅଧା ନଙ୍ଗୁଳି ନ ହେଲେ ଜୋଇଁ ମିଳିବେନି ଯେ ! ସେଦିନରୁ କହୁଛି ସେଟାକୁ ହଟାଅ । ଆଗରେ ଚାଲିବା ବେଳେ ବିଷ ଚରି ଯାଉଛି ମୋ ଦିହରେ । ହାତୀଟାମାନ ଦିହ ନେଇ ଏଗୁଡ଼ା କେମିତି ଯେ ଚଲଫେର୍ ହୁଅନ୍ତି ବାହାରେ ? ଆମେ ଆଉ ଝିଅ ହେଇ ନ ଥିଲୁ ! ସେଥିରେ ପୁଣି ବାପସାନ୍ତ ଆଣି ଦଉଛନ୍ତି ମେକିସି... କାହିଁକି ? କ'ଣଟା ଖରାପ ହେଇଗଲା ଯେ, ସୁନୀତା ତ ପୁଣି ପିନ୍ଧୁଛି ଟାଇଟ ସେଲୱାର, ବିନି ପିନ୍ଧୁଛି ଜାପାନୀକଟ୍ ସ୍କାର୍ଟ । ବିନି ତ କହୁଥିଲା ତା' ମା ସବୁ ବରାଦକରି ଆଣନ୍ତି । ଝିଅକୁ ଯିମିତି ସୁନ୍ଦର ଦିଶିବ ସିମିତି ପିନ୍ଧୁ । ଝିଅବେଳେ ବାପମାଙ୍କ ପାଖରେ ପିନ୍ଧିବନି ତ ପୁଅ ଝିଅର ମା ହେଇ ଶାଶୂ ଶଶୁର ଘରେ ପିନ୍ଧିବ ? ସେ ମଥା ଯାର ଅଛି ? ଏଇଥିରୁ ଜଣାଯାଉନି କିଏ କି ଘର ଝିଅ ? ସେଥିରେ ପୁଣି ବିନିର ଯୋଉତ ରୂପ ! ସେଦିନ ଘିଅ ରଙ୍ଗର ଶାଢ଼ିଟେ ପିନ୍ଧି ବେକରେ ପକେଇଛି ଗୋଟାଏ ଗଡ଼ଗଡ଼ିଆ ମାଳ ! ଦେଖିଥାନ୍ତା କି ବୋଉସାନ୍ତାଣୀ ଏସବୁ ! ଖାଲି କ'ଣ ନା କ'ଣ ଏତେ ବାଛ ବାଛ ହଉଛ ମ ? କିରାଣି କି ମାଷ୍ଟର ଚାକିରି ଖଣ୍ଡେ ଥିଲେ ତ ହେଲା । କୋଉ ଏବେ ରଜାଝିଅ ଯେ ରାଇଜଯାକ ବାଛୁଚ ? କି, ତୁମର ଏ ସବୁରେ

କି ଯାଏ ? ଯାହା ମୁଣ୍ଡକୁ ଲାଗିଛି ସେ ବୁଝୁଛି । ତୁମେ ମାଗନ୍ତାଙ୍କର ଝିଅବୋଲି କ'ଣ ସମସ୍ତେ ସେଇଆ ହେଇଛନ୍ତି ? ସବିତା ବାପା କୋଉ ହାକିମ କି ? କେସିଆର ଯିଏ କିରାଣି ସିଏ । ନ ହେଲେ ଟିକିଏ ବଡ଼ ଧରଣର । ସିଏ ତ ପୁଣି ବାହା ହେଲା ଡାକ୍ତର । ସୁନୀତା ବାପାତ ଖୋଜୁଛନ୍ତି ଇଂଜିନିଅର କି ଲେକ୍‌ଚରର୍ । ତା' ବାପା କ'ଣ କି ? ହେଡ୍‌କ୍ଲର୍କ । ତେବେ ? ତୁମେ କିଆଁ ଏତେ ଫୁଡ୍ ଫୁଡ୍ ହେବ ? ଛି ଛି, ମା ହେଇ ପୁଣି ଏଗୁଡ଼ାଙ୍କର ଏତେ ହିଂସା କେମିତି ମ ? ଝିଅକୁ କ'ଣ ତୁମ କପାଳରୁ ବାଣ୍ଟି ଦଉଛ କି ? କେତେ ଅଇସ କରିବ, ଦେଖିବା ଯେ ! ଚାହିଁତ ଥିବ - ଦିନଗୁଡ଼ା ଏଇମିତି ହଜିଯିବ । ତା'ପରେ ତୁମ ଘର, ତୁମ କରଣା ରଖୁଥା କେତେ ସାଇତି ।

ରୀନା ଲମ୍ୱା ନିଃଶ୍ୱାସଟାଏ ଛାଡ଼ିଲା । ଉପମାପାଇଁ ଭଜା ସୁଜିରେ ପାଣି ଢାଳି ପୁଣି କାନ ପାରିଲା - ଆସିଲେ କି ? ଏଇ ବୁଲୁଟା ଯେ କୁଆଡ଼େ ଗଲା ଏଯାଏ ? ଆସିଲେ ଟିକିଏ ଦାଣ୍ଡଘରେ ବସନ୍ତାନି ? କେତେବେଳେ କିଏ ଆସି ପହଞ୍ଚିଯିବ । ସେପାଖରୁ ଯଦି ଡାକେ ଦିଡାକ ମାରି ଫେରିଯାଏ, କିମିତି ବା କିଏ ଜାଣିବ ? ସେଦିନ ସେମିତି ଅଫିସ୍‌ର ପିଅନଟା ଚିଠି ଖଣ୍ଡେ ଝରକା ବାଟେ ପକେଇ ଦେଇ ଚାଲିଗଲା । ତେବେ ଅର୍ଜେଣ୍ଟ କାମ ଥିଲେ କ'ଣ କେହି ପଳାଏ ? ଜାଣିବେ ଯଦି ଘରେ ଲୋକ ଅଛନ୍ତି ନିଶ୍ଚୟ ଅପେକ୍ଷା କରିବେ । ନ ହେଲେ ପୁଣି ଡାକେ ଦିଡାକ ମାରିବେ । ତେବେ ବି... ଏସବୁ କ'ଣ ଭାରି ଭଦ୍ର କଥା ? ରୀନା ପୁଣି ଥରେ କାନ ପାରିଲା । ନାଃ କେଇ ନୁହେଁ । ପବନଟା ସେମିତି ପିଟୁଛି । ଅଗଣା ଲିମ୍ବଗଛରୁ ପତ୍ରଗୁଡ଼ା ଝରି ଗଦା ହେଉଛି । ଶୀତ ଯାଉଛି କି ନା ? ଏଇମିତି ରାଗ ତମରେ ଗଛଗୁଡ଼ା ଲଣ୍ଡା କରିଦେଇ ଯାଉଛି । ହ - ଯାଉ । ପୁଣି ପତ୍ର କଅଁଳିବ । ସାବ୍‌ଜା - ଛନ୍ ଛନ୍ । ଆଚମ୍‌କା ପବନ ଦମକାଏ କେଇଟା ଶୁଖିଲା ପତ୍ରକୁ ଭଉଁରି ଭିତରେ ଘୂରେଇ ଘୂରେଇ ଠେଲି ଦେଲା ରୋଷେଇଘର ଭିତରକୁ । ରୀନା ଉଠିପଡ଼ି ଦିହ ଝାଡ଼ି ହେଲା - ଇ-ସ୍, କି ଅସନା ! କି ଅସଭ୍ୟ ଏଇ ପବନଟା । ତା'ପରେ କରେଇଟା ଓହ୍ଲେଇ ରଖି କବାଟ ଆଉଜେଇ ଦେଇ ବାହାରି ଆସିଲା ପଦାକୁ । ଘର ଭିତରଟା ଶୂନ୍‌ଶାନ୍ । ବାହାରେ ବି କେହି ଡାକୁ ନାହାନ୍ତି । କେଜାଣି କେତେବେଳେ ଆସିବେ ? ଆସନ୍ତୁ ଏବେ ଯେତେବେଳେ ଆସିବେ । କି ନ ଆସନ୍ତୁ । କାମତ ସରିଛି । ପରଟା କେଇଖଣ୍ଡ କରିବାକୁ କେତେବେଳ ଲାଗିବ ଯେ - ରୀନା ଦାଣ୍ଡପାଖ ଶୋଇବାଘରକୁ ଗଲା । ଖଟ ଉପରେ ବସି ଝରକାଟା ଖୋଲି ଦେଲା । ଦାଣ୍ଡପାଖ ହତା ଦିପାଖରେ ରାସ୍ତା ଦୁଇଟା ଯାଇ ମିଶିଛି ଡାହାଣ ପଟ ମେନ୍ ଗେଟ୍ ପାଖରେ । ଗେଟ୍‌କୁ ଲାଗି ଆମ୍ବଗଛଟା ରହି ରହି ହଲୁଛି ପବନରେ । ତଳେ ବିଞ୍ଛି ହେଇ ପଡୁଛି ପୋଡ଼ା ବଉଳ ଗୁଣ୍ଡ । ତଥାପି କେଇଟା ପ୍ରଜାପତି ଉଡୁଛନ୍ତି ଉପରେ କେଉଁଠି କେମିତି କୁହୁଡ଼ି ମୁହଁରୁ ବର୍ତ୍ତି ଯାଇଥିବା କେଇଛିଞ୍ଚା ବଉଳରୁ ଶେଷ ମହୁ ଟୋପାକ ଶୋଷି ନେବା ପାଇଁ । ସତେମ ! ମୀନାଟା କେଇଦିନ ଭିତରେ କ'ଣ

ହେଇଯାଇଛି । ଗଲା ଆଷାଢ଼ରେ ବାହା । ପୂରିଲା ପୂରିଲା ଗୋଲଗାଲ ଚେହେରା ନେଇ ଶଶୁରଘରକୁ ଯାଇଥିଲା । କେଇଟା ମାସ ଭିତରେ କଳା ପଡ଼ିଯାଇଛି । ଆଖିଦି'ଟା ଭିତରକୁ ପଶିଯାଇଛି ତ ହନୁହାଡ଼ ଦି'ଟା ବାହାରି ପଡ଼ିଛି । ତା' ସାଙ୍ଗକୁ ଗାଲ ଦି'ଟା କେମିତି ଶେତା ଶେତା । କଥା ବି କହିପାରୁନି ଭଲ । - ବର କ'ଣ ଜେଲଖାନାରେ ପୂରେଇଥିଲା କିଲୋ ? - ବଳେ ବୁଝିବୁ ଯେ, ବାପଘର ଶଶୁରଘର ଭାତ ଭିତରେ କେତେ ତଫାତ୍ । ବୀଣା କହୁଥିଲା ତା'ର କାଳେ ପିଲା ହେବ । ପିଲା ହେଲେ କ'ଣ ଦିହ ଏମିତି ହେଇଯାଏ ? କାହିଁ - ସୁନୀତାର ମା'ତ ଛ'ଟା ପିଲାର ମା - ପୁଣି ବୟସ ହେଲାଣି କେତେ ନା କେତେ । ଜଣା ପଡ଼ନ୍ତି ସୁନୀତାର ମା' ତ ନୁହେଁ - ବଡ଼ଭଉଣୀ । ମୀନାର ଏବେ କୋଉ ଅଭାବ କି ? ବର ତ ତା'ର ବେଙ୍କରେ କାମ କରେ । ବୀଣା କହୁଥିଲା ଦିହିଙ୍କର ପଡ଼େ ବି ଭଲ । ହଁ - ଅ, କାହାର କିମିତି ଦିହ । ଏଇତ ନଳୀଗୋଡ଼ୀ ସବିତା । ଗୋରୀ ସିନା, କି ଦିହ ତା'ର ଥିଲା ଯେ - ସରୁ ମୁହଁଟାରେ ସିଧା ନାକ ଆଉ ମୁନିଆଁ ଓଠଟାକୁ ଦେଖିଲେ ଲାଗେ ମୁହଁତ ନୁହେଁ ଛୁରି ପଟେ ଯେମିତି । କଙ୍କାଳ ରେକେବି ହବନି । ପାଞ୍ଚଟା ମାସରେ ଶଶୁରଘରୁ ଆସିବା ବେଳକୁ ଚିହ୍ନିବି ହେଲାନି । ବାବା - ଚକା ବୁଲିଯାଇଛି । ରଙ୍ଗଟା ଯେମିତି ଚିକ୍ ଚିକ୍ ମାରୁଛି । - କିଲୋ ସବିତା, ଇଏ କ'ଣ ? ଶଶୁରଘର ଭାତରେ କ'ଣ ଇମିତି କିମିଆଁ ଥାଏ ? ଜିନୁ ନା କିଏତ କହିଲା - ଭାତରେ ନୁହଁମ ଦିହରେ । ଦିହରେ ତାର ବାହା ପାଣି ପଡ଼ିଛି । ତୋର ପଡ଼ିଲେ ବୁଝିବୁ ଯେ । ଆଉ କେଇଟା ଦିନ କି ? ତା'ର କ'ଣ ଠିକ୍ ହେଲାଣି କିଲୋ ? କୋଉଠି ମ ? ହେଇନି ଯେ ଚାଲିଛି । ବୋଉଟା ତା'ର ଯେମିତି ନା, ଗଲେ ପାର । ପାର କ'ଣମ ? ସେପଟେ ଯଦି ଶାଶୂଟି ସେମିତି ପଡ଼ନ୍ତି ନା, ମହର୍ଗରୁ ଯାଇ କାନ୍ତାରରେ ପଡ଼ିବା କଥା । ଇଏତ ବୋଉ ବାପାଙ୍କ କଥା । ଯେତେହେଲେ ବି ପେଟରୁ କାଢ଼ିଛନ୍ତି ତ । ସିଏତ ସାତ ପର । କଥା ତ ନୁହେଁ, ଦିହରେ କରତ ଚଳେଇ ଦେବେ । କି ଯାଏ ତାଙ୍କର ? ବୋହୂ ତ ନୁହେଁ, ପୋଇଲୀଟିଏ ନିଅନ୍ତି । ସୁମତି କଥା ଶୁଣିନୁ ? ବିଷ ଖାଇଦେଇଥିଲା ଯେ ? - ଇଲୋ ବୋଉ ! ତା' ବର ? ବରଟି ସୁସନ୍ତାନ ! ବାପା ମା'ଙ୍କର ସେ ପରମ ଭକ୍ତ ! ସତେ, ଆମ ଜୀବନଟା ଅଧା ଅଧାରେ ରହିଗଲା । ପଢ଼ାଟା ଆମର କୁଆଡ଼କୁ ହେଲା ନାହିଁ । ବସନ୍ତ ବଡ଼ଭଉଣୀ ଡାକ୍ତରାଣୀ ହେଇଛି । ବୟସ ହେଲାଣି ତିରିଶ । ବାହା ନ ହେଲେ ବି ତାର କି ଯାଏ ? କୋଉ କଥା ଅଭାବ ଯେ ତା'ର ? ବେଶ୍, ମନ ଖୁସି । ସ୍ୱାଧୀନ । ସାନ ଭାଇ ଭଉଣୀଙ୍କୁ ପଢ଼ଉଛି । ବାପା ମା' ତା ପାଖରେ ଯେମିତି ଜୋକ । ନ ପଢ଼ିବ ତ ବିଲକୁଲ ନାହିଁ । ଏଠି ଗୋବର ସାଉଁଟିବ । ସେଠିକି ସେଇଆ । ହବତ ଦୃଢ଼ ନ ହବତ ମୂଢ଼ । ଏଇ ମଝି ମଝିକିଆ ବୁଡ଼ି ମର । ଆଉ ଶୋଇ ଶୋଇ ସପନ ଦେଖ - କୋଉ ପରୀରାଇଜର ଅଲିଅଳ କୁମର ଆସିଛି ମେଘ ଭିତରୁ ମନପବନ ଘୋଡ଼ାରେ ଚଢ଼ି ।

ତୁମକୁ ଉଠେଇ ନେଇ କହୁଛି - ଆସ ସଖି, ତୁମେ ମୋର ଜୀବନଠାରୁ ବି ବଳି । ପ୍ରିୟତମେ, ରାଣୀ ମୋର । ତା' ପରେ ତୁମେ ବୁଲୁଛ ଫୁଲରାଇଜରେ ଫୁଲରାଣୀ ସାଜି । ଦିହରେ ବାଜୁଛି ଚାରିଆଡୁ ମଳୟ ପବନ । ମନ ଖାଲି ପହଁରି ଯାଉଛି ନୀଳ ଆକାଶରେ । ଛୁଇଁ ଛୁଇଁ ଯାଉଛି ଟିକି ଟିକି ତାରାକୁ... ରୀନା ବଡ଼ ଅସ୍ୱସ୍ତି ବୋଧ କଲା । ସତେ ମ, କି ଜୀବନ ଇଏ । ଖାଲି କଳ୍ପନା ଆଉ କଳ୍ପନା । କାଲି ପରି ଲାଗୁଛି । ମୀନା ଖେଳୁଥିଲା ସାଙ୍ଗରେ ଫ୍ରକ ପିନ୍ଧି । ସ୍କିପିଂରେ ତ ସବୁଥର ହେଇଛି ସିଏ ଫାଷ୍ଟ । ଗୁଲୁ ଗୁଲୁ ହେଇ କଥା କହେ ବୋଲି ଡଲିଦିଦୀଙ୍କର ସବୁବେଳେ ତା' ସାଙ୍ଗରେ ଗେଲ । ସାଙ୍ଗରେ ବସି ପ୍ରାର୍ଥନା କରା, ପିକ୍‌ନିକ୍‌ରେ ଜାଳ ସାଉଁଟା, ଆଉ କେଉଁଠୁ ବାହାଘର ବାଜଣା ଶୁଣିଲେ ଗୀତ ବୋଲା - ସବାରି ଚାଲେରେ ଧୀରେ ଧୀରେ ଧୀରେ... ଶେଷକୁ ମୀନାର ସବାରି ସତେ କେତେବେଳେ ଧୀରେ ଧୀରେ ଚାଲିଗଲା ଏତେ ଟିକିଏ ବି ବାରି ହେଲା ନାହିଁ । ପଛରେ ପଡ଼ିଗଲା ତା'ର ନାକକାନ୍ଦୁରୀ ପଣ, ଗୁଲୁ ଗୁଲୁ କଥା, ସ୍କିପିଂ କମ୍ପିଟିସନ, ଗୀତ ବୋଲା ଆଉ ସଜ କଇଁଫୁଲଟି ପରି ଫୁଟିଲା ମୁହଁ । ଜାହିଁ ଏସବୁ ବଦଳରେ କ'ଣ ପାଇଲା ସିଏ ? କେତେବେଳେ କେଇପଦ ବାହାବା କି ଟିକିଏ ସୋହାଗ । କିନ୍ତୁ ତା' ପାଇଁ ବି ତ କମ୍ କିଛି ବଳି ଦେବାକୁ ପଡ଼ିନି ତାକୁ ? ଏ ସବୁର ବା ମୂଲ କଳୁଛି କିଏ ? ଦେବାକୁ ଯିଏ ଆସିଛି କ'ଣ ବା ତାକୁ ଦବ ସିଏ ? କିଏ ବା କାହାକୁ କ'ଣ ଦେଇଛି ?... ଓଃ... ରୀନା ଝରକାଟା ବନ୍ଦ କରିଦେଇ ଶୋଇଗଲା ବିଛଣାରେ । କପାଳଟା ଯେମିତି ଟଣ୍ ଟଣ୍ ହେଇ ବିନ୍ଧି ଉଠିଲା । ପାଖରେ କେଉଁଠି ଟେବୁଲଘଡ଼ିଟା ଟିକ୍ ଟିକ୍ ହେଇ ଚାଲିଛି । ଶବ୍ଦଗୁଡ଼ାକ ରୀନାର ଗୋଡ଼ଠୁ ମୁଣ୍ଡ ପର୍ଯ୍ୟନ୍ତ ପ୍ରତ୍ୟେକ ଅଂଶକୁ ଯେମିତି ପଳ ପଳ କରି କୁଟେଇ ପକଉଛି ତା'ର ମୁନିଆଁ ମୂଷା ଦାନ୍ତରେ । ଦୁଇ ହାତରେ ଅଧକପାଳି ଦୁଇଟାକୁ ଚିପି ଧରିଲା ଜୋର୍‌ରେ । ସମୟଟା ସତେ କେତେ ଶୀଘ୍ର ଚାଲିଯାଉଛି, ଆଉ ଦୁନିଆଟା ଉପରେ ବୁଲେଇ ଦେଇ ଯାଉଛି ତା'ର ଧାରୁଆ ଦାନ୍ତସବୁ । କୋରି ଚାଞ୍ଛି ହେଇ ଯେଉଁଠି ଯାହା ସବୁ ସୁନ୍ଦର ବାହାରି ଯାଉଛି । ରହିଯାଉଛି ଖାଲି ଗଣ୍ଠି ଗଣ୍ଠିକିଆ କଙ୍କାଳ, ନେଳୀ ନେଳୀ ଶିରା ଆଉ ଆଖି ନାକର ଗହିରା ଗହିରା ଗାଡ଼ ସବୁ । ରୀନା ଭୟରେ ତକିଆଟାକୁ ଜାବୁଡ଼ି ଧରିଲା ଜୋର୍‌ରେ । ଓଃ ! ଏତେ ବଡ଼ ଘରଟାରେ କେହି ଜଣେ ଭଲା ଥା'ନ୍ତେ ! କୁଆଡ଼େ ଯା'ନ୍ତି ସବୁ ଏମାନେ ଏତେ ବେଳ ଯାଏ ? ଏଇ ଟୋକାଟା ନିଶ୍ଚୟ କୋଉଠି ବୁଲୁଛି । ନ ହେଲେ ସ୍କୁଲ କ'ଣ ଏତେବେଳଯାକେ ଖୋଲା ଅଛି ? ଚାରିଟା ବାଜିବଣି ନିଶ୍ଚୟ । ନାଃ, ଉଠିବାକୁ ହେବ । ପରଟା କରିବାକୁ ବାକି ରହିଛି ଯେ ! ରୀନା ଖୁବ୍ ସାବଧାନ ହେଇ ଉଠିଲା । ଖୁବ୍ ଆସ୍ତେ । ଦିହଟା ଯେମିତି ତା'ର ଅସାଡ଼ ହେଇଯାଇଛି । ପାଖ ଟ୍ରଙ୍କ ଉପରୁ ଆର୍ଶିଟା ଆଣି ଦେଖିଲା । ମୁହଁଟା ସତେ କେଇ ମିନିଟ୍ ଭିତରେ କ'ଣ ହେଇ ଯାଇଛି ? ଝାଳଗୁଡ଼ା ଜକେଇଯାଇଛି ଚାରିଆଡ଼େ । ଆଖି ଦି'ଟା କିମିତି ପଶି

ଯାଇଛି ଆଉ ଫିକା ଓଠଟା ଉପରେ କେଇଟା ଧଳାଗାର । ଓଃ, ମଣିଷ ସତରେ କ'ଣ ଭାବେ ? ଅଲରା ବାଳଗୁଡ଼ାକ ପାନିଆରେ ସଜାଡ଼ି ଦେଇ ବେଣୀ ସାଙ୍ଗରେ ମିଶେଇ ଦେଲା । ବେଣୀଟାକୁ ଜୁଡ଼ା ବାନ୍ଧିବା କି ଦରକାର ? ଯା'ର ବାଳ କମ୍ ସିଏ ସିନା ବଲ୍ କି ରିଂ ଦେଇ ଗଭା ବାନ୍ଧେ । ମୁହଁଟାକୁ ଭଲକରି ପୋଛିଦେଇ ଲାଭେଣ୍ଡର୍ କ୍ରିମ୍‌ରୁ ଟିକିଏ ମାଖି ହେଲା । ତା'ପରେ କେଇ ପଫ୍ ପାଉଡର ଥାପିଦେଇ କପାଳରେ ଗୋଲାପି ବିନ୍ଦି ପେନସିଲରେ ଟିପାଟିଏ ମାରୁ ମାରୁ ମନକୁ ମନ ହସିଲା । କଣ ଆଉ ଏମିତି ବଦଳିଛି ମ ? ଯୋଉ ମୁହଁକୁ ସେଇ ମୁହଁ... ଛି... ଛି... ଏଇ କମ୍ପାନୀଗୁଡ଼ା ପୁଣି ଏଡ଼ିକି ଠକ ! ପ୍ରଚାର କରିବେ ଯେ ସତଠୁଁ ବି ବଳିଯିବ । ମାତ୍ର ତିନିମାସର ଲାଭେଣ୍ଡର କ୍ରିମ୍ ବ୍ୟବହାର ପରେ ଆପଣଙ୍କ ମୁଖଶ୍ରୀରେ ଆଶ୍ଚର୍ଯ୍ୟତମ ଉନ୍ନତି... ତା'ପରେ କ'ଣ ନା ବବି ସ୍ୱପ୍ନ ଦେଖିଲା ସେ ମେଘଲୋକରେ ଭ୍ରମଣ କରୁଛି । ପୂର୍ଣ୍ଣିମାର ରାତ୍ରି । ଚାରିଆଡ଼େ ଜୋଛନା । କୁଢ଼ କୁଢ଼ ରୁପାର ପାହାଡ଼ ପରି ଖଣ୍ଡ ଖଣ୍ଡ ମେଘ । ଆଶ୍ଚର୍ଯ୍ୟ ! ଏଠି ରାତିରେ ବି କୋକିଳ ଡାକେ ? କିନ୍ତୁ ସେ ଯେ ଏକା ? ବବିର ସାଥୀହୀନ ଜୀବନ ଯେମିତି ଆଉ କାହାକୁ ଖୋଜିହେଲା । ହଠାତ୍ ଆସିଲା କେଉଁ ମେଘ ଉହାଡ଼ରୁ ଏକ ମହାକାଶଯାନ । ଆରେ, ଭିତରେ ଯେମିତି କିଏ ଜଣେ ବସିଛନ୍ତି । ଆଃ, କି ସୁନ୍ଦର ଏଇ ଯୁବକ ! କେଉଁ ଦେଶର ଲୋକ ମ ଇଏ ? ଯାନ ଅଟକିଲା ଠିକ୍ ତା'ରି ପାଖରେ । ଯୁବକଟି ଚାହିଁଲେ ବବିକୁ ନିମିଷେ । ଚାରିଚକ୍ଷୁ ଏକ ହେଲା । ସିଏ କହିଲେ, ତୁମେ ଏତେ ସୁନ୍ଦରୀ ? ଏଇ ରାଇଜରେ ତୁମପରି ସୁନ୍ଦରୀ ମୁଁ ଦେଖିଲି ଏଇ ପ୍ରଥମ । ଦୀର୍ଘଦିନର ମୋର ଏଇ ନିଃସଙ୍ଗ ଅନ୍ୱେଷଣ ସଫଳ ହେଇଛି ଆଜି । କି ନାମ ତୁମର ପ୍ରିୟେ ! ପ୍ରାଣେଶ୍ୱରୀ ମମ ! ତା'ପରେ ବବିକୁ ସେ ଉଠାଇନେଲେ ଯାନ ଭିତରକୁ । ନିଦଟା ହଠାତ୍ ଭାଙ୍ଗିଗଲା । ଲାଇଟ୍ ଜାଳି ଦର୍ପଣକୁ ଚାହିଁ ସେ ଅବାକ୍ ହୋଇଗଲା । ସତେ କେତେ ସୁନ୍ଦରୀ ସେ ହେଇଯାଇଛି ଯା ଭିତରେ ! ସୁନ୍ଦରୀ ନା ଛତ୍ରୁ ! ଯାଃ, ଯେତେ ସବୁ ଠକେଇ ଏଇ କମ୍ପାନୀଗୁଡ଼ାକର । ରୀନା ଆର୍ଶିଟାକୁ ଫୋପାଡ଼ି ଦେଇ ଉଠିଗଲା ରୋଷଘରକୁ । ମଣିଷ ବେକାରଟାରେ କିଣିଲା ଏଇ କ୍ରିମ୍‌ଟାକୁ । ସେ ପୁଣି ଦୀର୍ଘ ପାଞ୍ଚମାସର ସଞ୍ଚୟ । ଆଠଟା ଟଙ୍କା ଥିଲେ ଭଲ ତେଲଟେ ଅନ୍ତତଃ କିଣାହେଇ ପାରିଥାନ୍ତା । ତେଲର ଦର ଯେମିତି ବଢୁଛି ନା ମୁଣ୍ଡ ବାଳଗୁଡ଼ା ଶେଷରେ କାଟି ପକେଇବାକୁ ହେବ । ନ ହେଲେ କିଏ ଏମିତି ତାଗିଦ ସହିବ ମ ସବୁବେଳେ ? ରୀନା ଅଟାରେ ମହିନ ଦେଇ ଦଳିଲା । ସେଥିରେ ପୁଣି କି ତାଗିଦ, ସପ୍ତାହକୁ ରେଶନ କାର୍ଡ଼ରେ ଏଇ ଅଧ କେଜିଏ ବୋଲି ଘିଅ । ଦେଖିଚାହିଁ କରିବୁରେ ରୀନା ! ଆଚ୍ଛା କଥା, ଡାଲଡା ଘିଅଗୁଡ଼ାକ କ'ଣ କିଏ ଖାଲି ଖାଇଯାଏ ? ଭଲକରି ମହିନ ଦେବନି ତ ପରଟା ଖାସ୍ତା ହେବ କେମିତି ? ସେଥିରେ ପୁଣି କେତେ ଭଦ୍ରଲୋକଙ୍କର କେତେ ରକମର ବାଛବିଚାର । କ୍ଷମା କରିବେ ମୁଁ ଡାଲଡା ଖାଏନି ।

ମୋ ପେଟରେ ଯାଏନି... ନାଃ, ଅଖିଆ ! ଦୋକାନବଜାରରେ ବାବୁଙ୍କ ପାଇଁ ଖାଣ୍ଟି ଗବ୍ୟ ଘୃତରେ ପୁରି ଶିଙ୍ଗଡ଼ା କରି ରଖିଛନ୍ତି । କେଉଁଠି ଯେମିତି ପାଣି ଟୋପାଏ ବି ଛୁଅଁନ୍ତି ନାହିଁ । ଯାହାତ ଚେହେରା ! ଖାଲି ଦି'ହାତ ଲେଖାଁ କଲି ରଖିଦେଲେ କ'ଣ ହେଇଗଲା ? ହଁ, ସେଇଟାବି ଗୋଟାଏ ସୁବିଧା । ହନୁ ହାଡ଼ ଦି'ଟାକୁ ଲୁଚେଇଦେବ । ଯେମିତି ଖୋଲା ଖୋଲା ଆଖି ଦି'ଟା ଭୂତ ଆଖି ପରି କଳା କଳା ଗଗ୍ଲସ ତଳେ ଲୁଚିଯାଇଛି । ଏଇଭଳି ଲୋକଙ୍କୁ ନା - ମୁହେଁ ମୁହେଁ ଶୁଣେଇଦେବା କଥା । ବେହିଆ...

ରୀନା ଅଟା ମାଖିଲା । ଲୋକଙ୍କର ତ ଦେଖା ନାହିଁ ଏବେ ପରଟା କରି ରଖିଦେଲେ ଶୁଖିଯିବ । ଖାଲି ଅଟାଟା ଭଲକରି ଦଳି ରଖିଦେଲେ ହେଲା । ସିଏ ଆସନ୍ତୁ । ଆସିବା ସାଙ୍ଗେ ସାଙ୍ଗେ ତ ଆଉ ଖାଇବେ ନାହିଁ । ଚାହା ସାଙ୍ଗକୁ ମିକ୍ସଚର କି ବିସ୍କୁଟ କି ମିଠା ଦିଟା ଖାଇ ଗପ କରୁଁ କରୁଁ ପରଟା ଦିଖଣ୍ଡ ସେକି ଦେବାକୁ କେତେବେଳ ଲାଗିବ ଯେ ! ସତେ ସେଦିନ ଚାହା ଦେଉଁ ଦେଉଁ କ'ଣ ଯେ ହେଲା ! ଭଦ୍ରଲୋକଜଣକ ଯିମିତି ଚାହିଁ ଦେଇଛନ୍ତି ଆଉ ଆଖିରେ ଆଖି ପଡ଼ିଯାଇଛି, କ'ଣ ତ ହେଇଗଲା ଦିହରେ । ପିଆଲାଟା ଟେବୁଲ ଉପରେ ରଖୁ ରଖୁ ଗଲା ଚହଲି । ଅବଶ୍ୟ ବେଶି କିଛି କ୍ଷତି ହେଇନି । ସାମାନ୍ୟ ଟିକିଏ ଯାହା ପଡ଼ିଗଲା ପେଣ୍ଟରେ । ମୁହଁରେ ଅବଶ୍ୟ କହିଲେ - କିଛି ହେଇନି, କିଛି ହେଇନି, ଡୋଣ୍ଟ ମାଇଣ୍ଡ । କିନ୍ତୁ ତାଙ୍କ ଆଖିରୁ ଆଉ ପେଣ୍ଟ ଝାଡ଼ିବାରୁ ବୁଝାଗଲା ନାହିଁ କ'ଣ ହେଇଛି ନ ହେଇଛି ।

ହବା କଥା ତ ! ଭଦ୍ରଲୋକଜଣକ କେତେ ସଉକରେ ଫିନ୍ ଫାଇନ ଡ୍ରେସ ସବୁ ପିନ୍ଧି ଆସିଛନ୍ତି । ମାର୍ବଲ ଧଳା ଟାଇଟ ପେଣ୍ଟଟାର ଆଗ ପାଖରେ ଯଦି ଦାଗଟେ ରହିଯାଏ ପ୍ରେଷ୍ଟିଜଗୁଡ଼ା ସବୁ ସେଇ ବାଟେ ଲିକ୍‌କରି ଯିବନି ? କେତେ ହଳ ସାଜ ଆଉ ଏମିତି ଥିବ ଯେ ଖାଲି ଗୋଟାକ ପରେ ଗୋଟାଏ ବଦଳେଇ ପକେଇବେ ! ସେଇଥିପାଇଁ ତ ମୁଁ କହେ ଝୁନା ନେଇ ଚାହା ଦେଇଦେଉ । ନା, ମୋତେଇ ଦେବାକୁ ହବ । ସବୁ ତ ମୁଇଁ କରିବି । ଯିମିତି ଝିଅ ଜନ୍ମ ପାଇବାଟା ମୋର ଗୋଟାଏ ବିରାଟ ଭୁଲ ହେଇଯାଇଛି ଆଉ ତା'ରି ଶାସ୍ତି ଭୋଗୁଥିବି ଚିରକାଳ । ଅଜଣା ଭଦ୍ରଲୋକ ହଠାତ୍ ଆସୁ ନ ଆସୁଣୁ ଆଗକୁ ଯିବାଟା କ'ଣ ଭଲ କଥା ? ଯେତେହେଲେ ଗୋଟାଏ ନର୍ଭସନେସ୍ ତ ଅଛି । ସେଗୁଡ଼ାକୁ ଆମେ କୋଉ ଖାତିର କରୁ ଯେ ତା ନୁହେଁ । କାହାର କେମିତି ମେଜାଜ୍ ଟିକିଏ ଖାଲି ସୁରାକ ପାଇବା ତ ଦରକାର । ନାଇଁ, ବାପାଙ୍କର ସବୁବେଳେ ସେଇ ଗୋଟାଏ କଥା - ତୁମେମାନେ ସବୁ ଆଜିକାଲିକାର ପିଲା ହେଲ । ଆଉ ସେ ପୁରୁଣାକାଳିଆ କଥା କଣ ? ଦେଖ, ଚାହିଁ, କଥାବାର୍ତ୍ତା କର । ଆ-ହା, ଯେଉଁ ଅପ୍-ଟୁ-ଡେଟ ଆମକୁ କରିଦେଇଛ ନା ଶିକ୍ଷାଦୀକ୍ଷା ଦେଇ, ସେଇଥିରେ ତ ଖାଲି ନିମିଷକେ କିଣିନେବୁ ଭଦ୍ରଲୋକମାନଙ୍କୁ କଥାବାର୍ତ୍ତାର ଷ୍ଟାଇଲରେ । ସେଥର ସେମିତି ଭଦ୍ରଲୋକଜଣକ ପଚାରିଲେ - ଆପଣ (ଓଃ, କି ଭଦ୍ରତାର କଥା -ଆପଣ !)

ନିୟମିତ ନାରୀମହଲର କାର୍ଯ୍ୟକ୍ରମ ଶୁଣନ୍ତି ? ପ୍ରଥମେ ତ କିଛି ବୁଝି ହେଲା ନାହିଁ । ନାରୀମହଲ କ'ଣ ମ ? ହଠାତ୍ ଭାଗ୍ୟକୁ ମନେ ପଡ଼ିଗଲା - ଓ, ରେଡିଓର ନାରୀମହଲ । ବର୍ଷେ ହେଲା ଲଗାହଉଛି, ବାପା ଗୋଟିଏ ରେଡିଓ ଆଣିବା । ହଁ ଆଣିବା, ହଁ ଆଣିବା ହଉଛନ୍ତି । ଏଇ କଥାଟା କ'ଣ କେହି ଭଦ୍ରଲୋକଙ୍କ ଆଗରେ କହେ ? ହଁ ନ କହି ଆଉ କ'ଣ କହିଥାନ୍ତି ନା ଆମର ରେଡିଓ ନାହିଁ ? ଛି-ଛି ମାନ ଇଜ୍ଜତ କଡ଼ାକର ହେଲେ ରହିଥା'ନ୍ତା ? ଭାଗ୍ୟକୁ ସେ ବେଶି କିଛି ସେ ବିଷୟରେ ପଚାରିଲେନି ସିନା । ନ ହେଲେ ଧରା ପଡ଼ିବାଟା କେତେ ସମୟ ଲାଗିଥା'ନ୍ତା ? ତା'ପରେ ପଚାରିଲେ - ଆଚ୍ଛା, ଆପଣଙ୍କୁ ମ୍ୟୁଜିକ ଭଲ ଲାଗେ ନା ଡ୍ୟାନ୍ସ ? ବେଶ୍ ପ୍ରଶ୍ନ ତ ! ହଁ ରେଡିଓ ସେଣ୍ଟରରେ କାମ କରନ୍ତି ଯେତେବେଳେ ଯା ନ ପଚାରି ଆଉ କ'ଣ ପଚାରିଥା'ନ୍ତେ ବିଲାତରେ ପ୍ରଧାନମନ୍ତ୍ରୀ କିଏ ? ଆମେରିକାରେ ଚାଉଳ କେ.ଜି. କେତେ ? କିଏ ବା ନାଚଗୀତକୁ ଭଲ ନ ପାଏ ? ସେଥିରେ ପୁଣି କ୍ଲାସିକାଲ ଭଲ ଲାଗେ ନା ଆଧୁନିକ ? ନା ପଲ୍ଲୀ ? କୁନୁ ଆଉ ମିତା ଏବର୍ଷ କ୍ଲାସିକାଲରେ ଡିପ୍ଲୋମା କୋର୍ସ ପାସ୍ କଲେ । କୋଉ ବା ଏବେ ବେଶି ପଇସା ଖର୍ଚ୍ଚ ହେଇଥାନ୍ତା । କେତେ ବା ସେ ଦୁହେଁ ନ ଲଗେଇଛନ୍ତି କଳା ମନ୍ଦିରକୁ ଯିବାପାଇଁ ? ବର୍ଷଟିଏ ତ ଯାଇଛି । ବୋଉ ଶୁଣି ମରେ କି ମାରେ । କାହିଁକି ଇମିତି ହୁଏ ସିଏ ? ଛାଡ଼ - ଭାଗ୍ୟ ଯା'ର ମନ୍ଦ, ସେଇ ବର୍ଷକିଆ କୋର୍ସରେ ଯାହା ସାତଟି ରାଗ ଶିଖା ହେଇଥିଲା, ଭୈରବ, ଭୂପାଳୀ, ମାଳବ, କଲ୍ୟାଣ । ଯା ଭିତରେ ସତେ କଲ୍ୟାଣ ରାଗଟା କେତେ ଚମତ୍କାର ଲାଗେ ? କାହିଁକି ଫାଷ୍ଟଇଅର ପରେ ଆଉ ପଢ଼ିଲେନି ? କ'ଣ ଆଉ କୁହା ହେଇଥାନ୍ତା ? ବୋଉ କହିଲା ବାପର ଯଦି ଆହୁରି ରୋଜଗାର ଥା'ନ୍ତା ଝିଅସାନ୍ତାଣୀ କେଜାଣି ସିନେମାରେ ନାଚିବେ ବୋଲି ଅଳି କରନ୍ତେ । ଦଉଡ଼ି ଦଉଡ଼ି ଚୁଲି ମୁଣ୍ଡକୁ । ସେଥିରେ ପୁଣି କେତେ ସଉକ ମ... ଛି... ଛି ଯାସବୁ କୁହାଯାଏ ? ଛାଡ଼ିଦେଲି ଏମିତି । ବୋଉର ଦେହ ଖରାପ ଥିଲା ଯେ ରହିଗଲି ଗାଁରେ କେଇ ଦିନ । ଟଚ୍ ଛାଡ଼ିଗଲା - ଓ ମ୍ୟୁଜିକଟା ସତରେ ସବୁଠୁ କଷ୍ଟ । ଭୋକାଲ ତ ସବୁଠୁଁ ବଳି ।... ହେଲେ ହେଇଥିବ । କିଏ ଜାଣେ ସେ ସବୁ ଆମର ।

ରୀନା ଦଳା ଅଟାକୁ ଢାଙ୍କି ଦେଇ ଚାଲିଆସିଲା ଦାଣ୍ଡଘରକୁ । ବେଳ ହେଲାଣି ସାଢ଼େ ଚାରିଟା । କିଏମ କାହାନ୍ତି କେଉଁ ଅତିଥି ? ସେଥିରେ ପୁଣି ବାପାଙ୍କର ଯେଉଁ ତାଗିଦ୍ । ସବୁ ଠିକ୍ କରି ରଖିଥିବୁ ତାଙ୍କ ପାଇଁ । ମୁଁ ଆସିବି ତିନିଟା ବେଳକୁ । ତାଠୁଁ ଆଗରୁ ବି ସେ ଆସିପାରନ୍ତି । ବସା ଠିକଣା ଜାଣନ୍ତି । ଏକଲା ବି ଆସିଯାଇପାରନ୍ତି । ଗୋଡ଼ ଧୋଇବାକୁ ପାଣି ଦେଇ ଚାହା ଫାହା ଦେଉଥିବୁ । ମୁଁ ଆସିଯିବି ସଙ୍ଗେ ସଙ୍ଗେ ।...

ରୀନା ଦାଣ୍ଡଘର ଟେବୁଲ ଉପରେ କ୍ଲଥଟା ପକେଇଲା । ନନ୍-କ୍ଲଥର ଏଇଟାକୁ ସେ ଇଲେଭେନ୍‌ଥ କ୍ଲାସ ବର୍ଷ ତିଆରି କରିଥିଲା । ଆଉ ହେଣ୍ଡଲୁମ୍ କ୍ଲଥଟା ସବୁବେଳେ ପଡୁଛି । ହେଃ - ସେଇଟାର ଲକ୍ଷଣ ଭଲ ନୁହେଁ । ଏଥର ଗୋଟାଏ ନୂଆ କ୍ଲଥ ପକେଇବା ଭଲ । ମଝିରେ ବି ଏମ୍ବ୍ରଇଡରି ହେଇଛି । ନାଲି ଅକ୍ଷରରେ ନାମ ଲେଖା ହେଇଛି - ରୀନା । କଣକୁ ଗୋଟାଏ ଫୁଲଦାନି ରଖିଲେ କେମିତି ହୁଅନ୍ତା ? ହେଲେ କାଚର ଥା'ନ୍ତା କି ? ତା' ଛଡ଼ା ଫୁଲ ବି କାହିଁ ? ଥାଉ ଏଇ ରକମ । ଯିଏ ଏସବୁ କରିବା ଲୋକ ତାଙ୍କର ତ ଭ୍ରୂଭଙ୍ଗ ନାହିଁ । ଆମର କିଆଁ ଏତେ ଗରଜ ମ ? ଏମିତି ଟିକିଏ ସଜେଇ ଦେଲେ ହେଲା । ଟେବୁଲ ଦି' ପାଖରେ ଦିଟା ଚେୟାର ଆଉ ଗୋଟିଏ ଟୁଲ । ବେଶ୍...

ରୀନା ଦାଣ୍ଡ କବାଟ ଖୋଲିଦେଲା । ବାହାରେ ସୂର୍ଯ୍ୟ ଅସ୍ତ ଯାଉଥିଲା । ସେ ଦାଣ୍ଡକୁ ବାହାରି ଆସିଲା ମେନ୍‌ଗେଟ୍ ଯାଏ । ଡାହାଣପଟର ସରକାରୀ କଲୋନୀରେ ଧୂଆଁର କୁଣ୍ଡଳୀ ଉଠୁଥିଲା ଉପରକୁ । ବାବୁମାନେ ସବୁ ଅଫିସରୁ ଫେରି ଆସିଲେଣି ପରା । ଆମର ଅତିଥିଜଣକ କେଉଁଠି ବାଟ ବଣା ହେଲେଣି ନା କ'ଣ ମ ? ଏ ଟୋକାଟା ବି ଗଲା କୁଆଡ଼େ ଏଯାକେ ? ଶେଷ ପଉଷର ବାଉଳା ହାୱାଟା ତଥାପି ପିଟି ହେଉଛି ଝାପଟକୁ ଝପଟା । ଭିଡ଼ିମୋଡ଼ି ହେଇ ଉପରକୁ ଉଠୁଥିବା ଧୂଆଁର କୁଣ୍ଡଳୀଗୁଡ଼ା ପବନରେ ବିଛୁଡ଼ି ଯାଉଛନ୍ତି କିଏ କୁଆଡ଼େ । ବୃନ୍ତଚ୍ୟୁତ ପତ୍ର କେଇଟା ଭଉଁରି ଖେଳି ଫିଙ୍ଗି ହେଇ ଯାଉଛନ୍ତି ରାସ୍ତା କଡ଼କୁ ଏବଂ ଗେଟ୍ ପାଖର ଏକୁଟିଆ ଆମ୍ବଗଛଟାର କେଉଁ ଏକ ଶାଖାରୁ ଝରିପଡୁଛି କୁହୁଡ଼ିଜଳା ବଉଳର କେଇଟି ରେଣୁ ଇତସ୍ତତଃ ହେଇ । ପୂର୍ବର ଆକାଶରୁ ପାଣ୍ଡୁଛାୟା ସନ୍ଧ୍ୟାର ତମସା ଫିଟି ପଡୁଛି ତଳକୁ ଅସହାୟା କେଉଁ ବାଳିକାର ଅବହେଳିତ କେଶର ଅରଣ୍ୟ ପରି ।

[୧୯୭୪]

# ସାଧୁପୁର ହାଟ ଓ ସଦେଇ ମହାଜନ କଥା

ସାଧୁପୁର ହାଟଟାକୁ ଗୁଣ୍ଡାମାନେ ପୂରା ଜାଳିଦେଲେ । କଥାଟା ଆସି କହିଲା ସଦେଇ ମହାଜନ ଓରଫ ସଦାନନ୍ଦ ସାହୁର ମଝିଆଁପୁଅ ପବନା ।

ଫଗୁଣ ମାସିଆ ଦିନ ରତରତ ।

ସଦେଇ ମହାଜନ ଦିହଟା କିଛିଦିନ ହେଲା ଟିକିଏ ନରମ ଥିଲା । ଶୀତଦିନେ ମହାଜନର ଦିହ ଭଲ ରହୁ ନାହିଁ । ଚଉରାଶୀ ନର୍କ ପାରି ହେଲାଣି । ଦିହର ବଳ କମିବା ଦିନରୁ ବେଉସା ସିନା ଆଗ ଭଳି ବୁଝୁ ନାହିଁ, ତେବେ ଦୋକାନରେ ବସି ହିସାବପତ୍ର ବୁଝେ । କର୍ମଚାରୀଙ୍କ ଉପରେ ନଜର ରଖେ । ତା'ର ଶାଗୁଣା ଆଖି । ସାପ କାନ । ମହାଜନ ଦୋକାନରେ ବସିଲେ କିଛି ଟିକିଏ ବି ଆଡ଼ବାଙ୍କ କେହି କରିପାରିବେ ନାହିଁ । ଦଶ ପୁରୁଷର ବେଉସା । କାହିଁ କେଉଁ କାଳର । ମହାଜନ ଘର ନଥି ଅଛି । ସେଥିରେ ଦଶ ପୁରୁଷର ଟିପଣା ସବୁ ରହିଛି । ସଦେଇ ବେଳେ ବେଳେ ସେଇ ନଥି ସବୁ ଖୋଲେ । ନିଜେ ପଢ଼େ । ଆଖି ଆଗରେ ସବୁ କଥାର ଚିତ୍ର ଆଙ୍କେ । ତା'ର ଚାରି ପୁଅ । ସବୁ ଧୁରନ୍ଧର । ସମସ୍ତେ ପାରିଗଲେଣି । ବାପାଙ୍କୁ ମାନନ୍ତି । ବୋହୂମାନେ ଶଶୁରର ସେବା ଯତ୍ନ କରନ୍ତି । ମହାଜନର ସୁଖର ସଂସାର । ଝିଅ ଦି'ଟା ବାହା ହେଇ ଆଠ ବର୍ଷ ହେଲା ଗଲେଣି । ତାଙ୍କର ବି ବେବସା ପତ୍ର ଚଢ଼ା । ଶୀତ ଚାଲିଗଲାଣି ମାସେ ହେଲା । ମହାଜନ ଏବେ ସୁସ୍ଥ ଅଛି । ସକାଳୁ ଯାଇଥିଲା ପାଟଣା ସାହି ମେଳନ ଦେଖି । ବଡ଼ବଡ଼ୁଆ କହିଛନ୍ତି ଦୋଳବେଦୀରେ ଦୋଳଗୋବିନ୍ଦ, ଚାପରେ ମଧୁସୂଦନ, ରଥରେ ବାମନଙ୍କୁ ଦେଖିଲେ ପୁନର୍ଜନ୍ମ ହୁଏ ନାହିଁ । ସଦେଇ ପକ୍କା ସଂସାରୀ ହେଲେ ବି ଏ ସବୁକୁ ମାନେ । ଦିଅଁ ଦେବତାରେ ତା'ର ବିଶ୍ୱାସ ଅଛି । ସାଧୁ ବ୍ରାହ୍ମଣରେ ଭକ୍ତି ଅଛି । ଓଷା ବାରରେ ତା' ଘରେ ଶାସନି ବାହ୍ମଣଙ୍କ ପତ୍ର ପଡ଼େ । ସୁଦଶା ବ୍ରତକୁ ମହାଜନ ଭାରି ଧୁମ୍‌ଧାମରେ ପାଳେ । ସେଦିନ ଦଶଜଣ ବାହ୍ମଣ ତା' ଘରେ ଖା'ନ୍ତି । ମୁଠି ଭରା ଦକ୍ଷିଣା ନିଅନ୍ତି । ମହାଜନ ବାଡ଼ିରେ ବେଲଗଛ । କଦମ୍ବଗଛ । ବାଡ଼ି ପଟ ଗଡ଼ିଆରେ ରକ୍ତପଦ୍ମ ଫୁଟେ । ଘର ବାଡ଼ିରେ ଫୁଟେ ଟଗର । ଏସବୁ ଲକ୍ଷ୍ମୀଙ୍କର ପ୍ରିୟ । ମହାଜନ ଆଇଁଷ ଖାଇଲେ ବି ସେମିତି କିଛି ଖାସ୍ ଲୋଭ ନାହିଁ । ରୁକୁଣୀ ଯିବା ଦିନଠୁଁ ସେ ଏକରକମ ଆଇଁଷ ଛାଡ଼ିଦେଇଛି କହିଲେ ଚଳେ । ସେ କହେ ରୁକୁଣୀ ଯିବା ପରଠୁଁ ସାଳନ୍ଦୀ ନଈର ଜହ୍ଲା, ପୁଠା,

ସେରଣା ମାଛବି କୁଆଡ଼େ ଚାଲିଗଲେ । ରୁକୁଣୀର ହାତରନ୍ଧା, ଟଭାରସ ଦିଆ ମାଛବେସର ଆଉ କିଏ କରିବ ? ଆଜିକାଲିକା ଉଷୁଧ ଦିଆ ବଡ଼ ମାଛରେ କି ଅଜାତିଆଙ୍କ ଶାଗୁଆତିରେ ସୁଆଦ ତ ନାହିଁ, ଅଛି ଖାଲି ବିଷ ।

ମହାଜନ ମେଳନରୁ ଫେରି ଖାଇ ପିଇ ଟିକିଏ ଶୋଇଥିଲା । ଫଗୁଣ ମାସିଆ ଦକ୍ଷିଣା ପବନ ଦଉଛି ଶିରିଶିରି ହେଇ । ନୂଆ ପବନ ଦିହରେ ବାଜି ଧଡ଼କା ଚମରେ ଉଷୁମ ଲାଗୁଛି । ମହାଜନ ନିଦରୁ ଉଠି ବସିଛି । ବଡ଼ବୋହୂ ଏଇନେ ଖାଣ୍ଟି ଦୁଧରେ ଚାହା ଦବ । ପଚାରିବ, ବାପା, କ'ଣ ଖାଇବେ ? ପକୁଡ଼ି ଟିକିଏ କରିଦେବି କି ? ମାରୱାଡ଼ି ପଟି ପୁଚୁକାବାଲାର ତାଜା ଭୁଜିଆ ଅଛି । ଆପଣଙ୍କ ପୁଅ ସକାଳେ ଆଣିଛନ୍ତି । ମୁଠେ ଦେବି କି ? ନ ହେଲେ ଲୁଣି ବିସ୍କୁଟ ଦି'ପଟ ? ମହାଜନ ଏଇମିତି କେଇପଦ ମିଠା କଥା ଆଉ ଉଷୁମ ଚାହାର ସ୍ପର୍ଶ ଅପେକ୍ଷାରେ ଥିବା ବେଳେ ପବନା ଆସି କହିଲା - ସାଧୁପୁର ହାଟଟାକୁ ଗୁଣ୍ଡାଏ ପୂରା ଜାଳିଦେଲେ । ମହାଜନ କିଛି ବୁଝିପାରିଲା ନାଇଁ ପ୍ରଥମେ ।

ପଚାରିଲା - କ'ଣ କହିଲୁକିରେ ପବନା !

- କହିଲି ପରା ସାଧୁପୁର ହାଟଟାକୁ ଗୁଣ୍ଡାଏ ପୂରା ଜାଳିଦେଲେ ।

- କ'ଣ କହିଲୁ ?

- ଆଉ କହିପାରିବି ନାହିଁ ।

ପବନା ସ୍ୱରରେ ପ୍ରଥମଥର ପାଇଁ ବିରକ୍ତି, କ୍ରୋଧ, ନୈରାଶ୍ୟ ଏବଂ ଦୁଃଖମିଶା ଏକ ଅକାଳ ମେଘର ପସରା ଅଜାଡ଼ି ହେଇ ପଡ଼ିଥିଲା ।

- ଆରେ ଆମ ଦୋକାନ ? ଆମ ଗୋଦାମ ?

- ତୁମ ଦୋକାନ ଆଉ ଗୋଦାମ କ'ଣ ସାଧୁପୁର ହାଟ ବାହାରେ ?

- କ'ଣ କହିଲୁରେ ପବନା ? କିରେ କାହିଁକି ? କ'ଣ ଏମିତି ହଠାତ୍ ହେଇଗଲା ଯେ ଗୁଣ୍ଡାମାନେ ଏମିତି ମାତିଗଲେ । ଆରେ ସର୍ବନାଶ ହେଇଗଲାରେ । ଦଶପୁରୁଷର ବେଉସା । କେତେ କ'ଣ ନାହିଁ ନ ଥିବା ଚିଜ-ଦରବର ପସରା । କୋଉ ମୁଲକର ଚେରମୂଳିଠାରୁ ଗାଈ ମଇଁଷିଙ୍କ ଦାନାପାଣି । କିରେ କ'ଣ ହେଲା କିରେ ପବନା ?

- ଥାଉ ଥାଉ ବେଶି ଭାବ ନାହିଁ । ଜୀବନ ବଞ୍ଚେଇ ଆମେ ଦି'ଭାଇ ଚାଲିଆସିଛୁଁ କୁହ । ଗୋଟେ ମିନିଟ୍ ଡେରି ହେଇଥିଲେ ସେଇ ନୂଆ ପିଲା ଉଥୁଡ଼ାଟା ଯାଇଥା'ନ୍ତା ଶେଷ ହେଇ । କିଛି କୁଆଡୁ ନାହିଁ । ପାଟଣାସାହି ମେଳନ ସାରି ଦଶରଥପୁର ଶାସନିଆମାନେ ବିମାନ କାନ୍ଧେଇ ଖୋଳ କରତାଳ ବଜେଇ, ହୋରି ଗୀତ ଗାଇ ଚାଲିଛନ୍ତି । ହଠାତ୍ ସେଇ ଗୁଜୁରାଟୀ ସ'ମିଲ୍ ପାଖରେ ହେଲା ଆକ୍ରମଣ । କେହି

କିଛି ବୁଝିବା ଆଗରୁ ଠାକୁରଙ୍କ ବିମାନଟା ନିଆଁରେ ଜଳୁଛି ତ କାନ୍ଧୁଆମାନେ ରଡ଼ି କରି ତଳେ ଗଡୁଛନ୍ତି । ଦି'ଟା କାନ୍ଧୁଆ ଦେଖୁ ଦେଖୁ ଜଳିଗଲେ । ବିମାନ କଥା କିଏ ପଚାରୁଛି । କିଏ କୁଆଡ଼େ ପଳେଇଲେ ତା'ର ହିସାବ ନାହିଁ । ଦେଖୁ ଦେଖୁତ ନିଆଁ ଚରିଗଲା ଉପର ଆଡ଼କୁ । ଉପର ତେଲୀପଟି, ତଳ ତେଲୀପଟି, ତାମିଳିପଟି ଆଉ ମାରଓ୍ୱାଡ଼ିପଟି ସବୁ ଏଖିଣିକା ଜଳୁଛି । ହାଟ ପାଖକୁ ଆସିଲା ପଛରେ । ଝୁନ୍‌ଝୁନ୍‌ଓ୍ୱାଲାର ଦି'ଟାଯାକ ତିନିତାଲା କୋଠାରେ ଯିମିତି ହନୁମାନ୍ ଲାଙ୍ଗୁଳର ନିଆଁ ଲାଗିଯାଇଛି... ଦେଖ, ଦେଖ ନିଆଁ ଉଠୁଛି... ଓଃ ବାପ୍‌ବାଃ, କି ତତଲା ପବନ... ସଂସାରଟା ଜଳିଯିବ ନା କ'ଣ ? ଧୂଆଁ ଯେ ସବୁ ଆକାଶକୁ ଢାଙ୍କିଦେଲାଣି । ଇ-ଇ-ସ... ଶୁଣୁଛ, ଶୁଣୁଛ, ବାପା, ହାଟ ଭିତର ଶିରୀଷ ଗଛଗୁଡ଼ାକରେ ଚଢ଼େଇମାନେ କିମିତି ରଡ଼ି କରୁଛନ୍ତି । ମଣିଷର କି ଚିତ୍‌କାର ! ଆରେ ବାପ୍‌ବା, ଇଆଡ଼େ ଆସିବେ ନା କ'ଣ ? କିଏ ଜାଣେ ବାବା, ରାକ୍ଷସଗୁଡ଼ା କୁଆଡୁ ଇମିତି ମାତିଲେ ? କିଏ ତାଙ୍କୁ ମତେଇଲା ?

ମହାଜନ ଦିହରୁ ସୁଲସୁଲିଆ ଦକ୍ଷିଣା ପବନର ରୋମଉଲୁସା ପବନର ଛାପ କେତେବେଳୁ ଚାଲିଗଲାଣି । ଦିହରେ ବାଜୁଛି ଅଦିନିଆ କାଳବୈଶାଖୀର ତତଲା ଝାପ୍‌ଟା । ସେ ନିର୍ବାକ୍ ହେଇଯାଇଛି । ତା' ପାଟିରେ କଥା ନାହିଁ । ନାକରେ ନିଃଶ୍ୱାସ ଅଛିକି ନାହିଁ ଜଣାପଡୁ ନାହିଁ । ପବନା ଭିତରକୁ ଚାଲିଯାଇ ସମସ୍ତଙ୍କୁ ସାବଧାନ କରିଦେଲା । ଭଲ ହେଇଛି । ବଡ଼ଭାଇ ଯାଇଛନ୍ତି କଲିକତା । ସେ ତ ଆଜି ଫେରିବେ ନାହିଁ । ଖାଲି ଯାହା ସାନଟା କଥା । ସେ ଯଦି କଟକରୁ ଫେରିଆସିବ ତେବେ ବଡ଼ ଅନର୍ଥ ହେଇଯିବ । ଏବେ ତ କୁଆଡ଼େ ଖବର ଦବାବି ଅସମ୍ଭବ । ଏତିକି ରକ୍ଷା ଯେ ତଳ ତେଲୀପଟି ଭିତରେ ଥିବା ପୁରୁଣା ଘରଟାକୁ କୋଉଦିନୁ ଛାଡ଼ି ଦେଇ ବଜାରଠାରୁ ବେଶ୍ କିଛି ଦୂରରେ ନୂଆ ଘରଟା ସେମାନେ କରିଛନ୍ତି । ନୂଆ ଘରଟାର ଉତ୍ତରକୁ ରହିଛି ଭଦ୍ରକ-ଚାନ୍ଦବାଲିର ନୂଆ ରାସ୍ତା । କିଛି ଅସୁବିଧା ହେଲେ ଦକ୍ଷିଣକୁ ନ ଯାଇ ଉତ୍ତରକୁ ପଳେଇବାକୁ ହେବ । ଜୀବନ ବଞ୍ଚିବା ହେଲାଣି ବଡ଼ କଥା । କଥାରେ ଅଛି ସାତଥର ହେବ ବଢ଼ି, ଥରେ ହେବ ଘରପୋଡ଼ି ।

ପବନା ଚେଷ୍ଟା କଲା କଟକକୁ ଫୋନ୍ ଲଗେଇବ । କିନ୍ତୁ ନାଃ, ଫୋନ୍ ଲାଇନ୍ ସବୁ କୁଆଡ଼େ ଛିଡ଼ିଗଲାଣି । ଏସ୍‌ଟିଡି କେବୁଲ୍ ଚେମ୍ବର ସବୁ ବି ପୋଡ଼ିଗଲାଣି । ଆଉ କିଛି ଉପାୟ ନାହିଁ । କେବଳ ଯାହା ଘର ଭିତରେ ହାତ ଟେକି ଈଶ୍ୱରଙ୍କୁ ଡାକିବା । ମହାଜନ ସମ୍ଭବତଃ ଈଶ୍ୱରଙ୍କୁ ଭୁଲିଯାଇଥିଲା । ଯେତେଦୂର ମନେପଡୁଛି ତା'ର ହେତୁ ହେବା ଦିନଠାରୁ ଆରମ୍ଭ କରି ତା' ପୂର୍ବ ଦଶପୁରୁଷର ନଥି ଭିତରେ ଏମିତି କିଛି ଦଙ୍ଗା ହେବାର ନଜିର ନାହିଁ । ଥରେ ହେଇଥିଲା ସ୍ୱରାଜ ଅମଳରେ । ଆଜି ଯେଉଁଠି ଗୁଜୁରାଟୀ ସ'ମିଲ୍ ହେଇଛି ସେଇ ଛକରେ ହେଇଥିଲା ଗୁଳିମାଡ଼ । ଅଧ ଘଣ୍ଟା ଭିତରେ ସବୁ ଆକଟ ହେଇଗଲା । ସେତେବେଳେ ସେ ଜଙ୍ଘା ଭେଣ୍ଡିଆ । ବତିଶ ବର୍ଷର ।

ହୁଳହୁଳି ହରିବୋଲ ଧ୍ୱନିରେ ସାରା ସହର କମ୍ପି ଉଠିଲା । ଦିନେ କି ଦି ଦିନ କର୍ଫ୍ୟୁ ହେବା ପରେ ସବୁ ଥଣ୍ଡା । ଆଉ ଥରେ ସେମିତି ଗୋଟାଏ ଅଧାପନ୍ତରିଆ ଦଙ୍ଗା ହେଇଥିଲା ତାଜିଆ ଯାତରାକୁ ନେଇ । ମହରମ୍‌କୁ ତାଜିଆ ଯାତ ବେଶ୍ ଜମେ । ମୁସଲିମ ଭାଇଙ୍କ ବାଡ଼ି ଖେଳ ସାଙ୍ଗକୁ ଉତ୍ତାଳିଆ ବାଜା । ମାଟିଆପାଳ ବାଉରିଙ୍କ ଢୋଲ ଆଉ ମହୁରୀର ଦିହଉଲୁସା ବାଜା ସାଙ୍ଗକୁ ରମଜାନ ଚଚ୍ଚାର ସେ ଯଉଁ ନାଚ ଆଉ ବାଡ଼ି ଖେଳ ! ବାବ୍‌ବା, ରମଜାନ ଚଚ୍ଚାର ପାକଳ ଦିହରେ କି ତାକତ୍ ! ପାଖରେ ଠିଆ ହେଇଥିଲେ ଭିଡ଼ି ନେଇ କହିବ - କିରେ ବେଟା ସଦେଇ, ଆ ଚାଲିଆ, ନାଚ ମୋ ସାଙ୍ଗରେ । ଆରେ ଖାନା ସିନା ଖାଇବୁ ନାହିଁ ମୋ ସାଙ୍ଗରେ, ନାଚ, ମନ ଉଲୁସେଇ ନାଚ । ମରଦକା ବଚ୍ଚା ଏଇଠି ନାଚିବୁ ନାହିଁ ତ ଆଉ କେବେ ନାଚିବୁ ? ରମଜାନ ଚଚ୍ଚା କେଡ଼େ ସ୍ନେହୀ ମଣିଷଟିଏ ! ଦଶ ମହଲାର ଦଶଟା ଆକାଶଛୁଆଁ ତାଜିଆ । କି ବଢ଼ିଆ ଜରିକାମ କରା ଚାରି ଥାକିଆ ତାଜିଆ । ସବା ଉପର ଥାକରେ ବୁଢ଼ିଆଣୀ ଘେର । ବୁଢ଼ିଆଣୀ ଜାଲ ଭିତରେ ମହମ୍ମଦ୍ ଲୁଚିଯାଇଥିଲେ କାଫେରଙ୍କ ଆକ୍ରମଣରୁ ରକ୍ଷା ପାଇବା ପାଇଁ । ସଦେଇ ବୁଢ଼ିଆଣୀକୁ ସଲାମ କରେ । ରମଜାନ୍‌ଚଚ୍ଚା ଖାଲି ତାକତ୍‌ଦାର ନୁହେଁ । ମୁଣ୍ଡରେ ମସଲା ଥିଲା ତା'ର । ବହୁତ କଥା ଜାଣିଥିଲା । ରମଜାନଚଚ୍ଚାର ବାପା - ଗୋସାପାମାନେ ତାଙ୍କ ଘରେ ସବୁଦିନିଆ ମୂଲିଆ । ତା ବାପା ରଜାକ୍ ନାନା ଥରେ ହଜ୍ କରିବାକୁ ଗଲା ଯେ ଆଉ ଫେରିଲା ନାହିଁ । ରମଜାନ୍ ଚଚ୍ଚା କହିଲା ହଜ୍ କରି ବାଟରେ ଯଦି କେହି ହଜିଯାଏ, ସେ ମରେ ନାହିଁ । ସ୍ୱଦେହରେ ସ୍ୱର୍ଗକୁ ଚାଲିଯାଏ । ସଦେଇ ବିଶ୍ୱାସ କରେ । ସତେତ ପୁରାଣରେ ଲେଖା ଅଛି ଭକ୍ତମାନେ ସ୍ୱଦେହରେ ସ୍ୱର୍ଗକୁ ଯା'ନ୍ତି । ଯୁଧିଷ୍ଠିର ସ୍ୱଦେହରେ ସ୍ୱର୍ଗକୁ ଯାଇଥିଲେ ।

ଉଁଚା ଉଁଚା ତାଜିଆମାନେ ଯେତେବେଳେ ଚାରିଆଡୁ ଆସନ୍ତି ଚଉଖୁଣ୍ଟି ପାଖକୁ ମେଳନ ପାଇଁ ବାଟରେ କେତେ ଯେ ବାଉଁଶ, ଗଛ ସବୁ ହଣାଯାଏ ତା'ର ହିସାବ ନାହିଁ । ତାଜିଆ ଯାଉଛି । ତାକୁ ଅଟକେଇବ କିଏ ? ଗଛ କଟା ହେଲେ କି ମଜା ! ଥରେ ସେଇ କରେଇ ବିକା ତାମିଳିର ଗୋଟାଏ ଆମ୍ବଗଛ କାଟି ପକେଇଲେ । ପିଲାମାନେ ଭାରି ଖୁସି । ଠିକ୍ ହେଇଛି । ଗିଧ ତାମିଳି ଗଣେଶ ପୂଜାକୁ ଚାନ୍ଦା ଦବ ଅଣିଟିଏ କ'ଣ ନା ତାଙ୍କ ଘରେ ଗଣେଶ ପୂଜା । କିନ୍ତୁ ସବୁଠୁ ବଡ଼ କଥାଟାଏ ହେଇଗଲା ଯେଉଁଦିନ ମଠ ବାଡ଼ି ପଟ କଦମ୍ବଗଛଟାର ଗୋଟାଏ ଡାଳ କଟା ହେଇଗଲା । ମହନ୍ତ ତ ରାଗି ଅଗ୍ନିଶର୍ମା । ସେଥର ମହରମ ପଡ଼ିଥାଏ ଆଷାଢ଼ ମାସରେ । ଗଛଟା ବଡ଼ ବଡ଼ ଫୁଲରେ ଭରିଯାଇ ଦେଖାଯାଉଥାଏ ଯିମିତି ଯମୁନା କୂଳରେ ସେଇ କଦମ୍ବ ଗଛ, ଯାହା ମୂଳରେ ରାଧାକୃଷ୍ଣ ସଯୁଆଁ କେଳି କରୁଛନ୍ତି । ମହନ୍ତ ଏକେ ବୈଷ୍ଣବ, ସେଥିରେ ପୁଣି କଦମ୍ବ ଫୁଲରେ ଲକ୍ଷ୍ମୀଙ୍କର ବାସ । ଏ ତ ଗଛ କଟା ନୁହେଁ । ଖୋଦ ଲକ୍ଷ୍ମୀଙ୍କର ଅଙ୍ଗଛେଦନ । ସେ କ'ଣ ଛାଡ଼ନ୍ତି ? ହୈ-ଚୈ ଖେଳିଗଲା । ପୋଲିସ୍ ଆସିଲା । ତାଜିଆ ଅଟକ । ଚାଲିଲା ମିଟିଂ । ମାଲି-ମକଦ୍ଦମା ।

ତଳ କୋର୍ଟରୁ ଉପର କୋର୍ଟ । ଶେଷରେ ବଡ଼ ବଡ଼ ମୌଲବି ଆସିଲେ । ତାଙ୍କୁ ପଚରା ହେଲା । ସେମାନେ କହିଲେ ତାଜିଆ ଏତେ ଉଞ୍ଚା ହେବାର କୌଣସି ନିୟମ ନାହିଁ, ଏ ଖାଲି ଆଖି ଦୁରୁଶିଆ ହେବା କଥା । ଛୋଟ ହେଲେ ବି ଚଳିବ । ସେମାନଙ୍କ କଥା ସମସ୍ତେ ମାନିନେଲେ । ସେଇଦିନଠୁଁ ତାଜିଆ ଛୋଟ ହେଇଗଲା । କିନ୍ତୁ ରମଜାନଚଚ୍ଚାର ବାଡ଼ି ଖେଳ ବନ୍ଦ ହେଲା ନାହିଁ କି ବାଜା-ବାଜଣା ବି କମିଲା ନାହିଁ । ମହରମ୍ ମଜାରେ ଟିକିଏ ବି ଆଞ୍ଚ ଆସିଲା ନାହିଁ । ଇଦ୍ ମୁବାରକ, ହୋଲି ମୁବାରକ୍ ସବୁ ଚାଲିଲା । ରମଜାନଚଚ୍ଚାକୁ ଅବିର ଦେଲେ ସେ ହସି ହସି ଚାଲିଯାଏ । ପିଚକାରୀ ମାଇଲେ ସେ ପିଠି ପତେଇଦିଏ । ମାର ସଦେଇ, ଭଲକି ମାର । ଡରନା । ତୁମର ହୋଲି କ'ଣ ଆମର ନୁହେଁ । ଆମେ ପରା ଭାଇ-ଭାଇ !

କିନ୍ତୁ ଆଜି ଏ ସବୁ କ'ଣ ହେଇଗଲା ? ଏଇ ରମଜାନ୍‌ଚଚ୍ଚାର ପୂର୍ବ ପାଞ୍ଚପୁରୁଷ ମହାଜନ ଘରେ କାମ କରିଛନ୍ତି । ସେତେବେଳେ ମାଲବୁହା ହୁଏ ପତଲା ଡଙ୍ଗା ଆଉ ଶଗଡ଼ରେ । ବୈଶାଖ ଜ୍ୟେଷ୍ଠରେ ପତଲା ଡଙ୍ଗା ସବୁ ମରାମତ ହୁଏ ସାଲନ୍ଦୀ କୂଳରେ । ରଜ ସଂକ୍ରାନ୍ତି ଯିବା ପରେ ପହିଲି ଆଷାଢୁଆ ବଢ଼ି ଯିମିତି ଆସେ ରମଜାନଚଚ୍ଚାର ବାପା-ଗୋସାପାମାନେ ଡଙ୍ଗାକୁ ଭସେଇ ଦିଅନ୍ତି । ମହାଜନଘର ଭାରି ବିଶ୍ୱାସ ତାଙ୍କ ଉପରେ । ଆଷାଢ଼ଠୁଁ ରାହାସ ପୂନେଇଁ ପର୍ଯ୍ୟନ୍ତ ନଈରେ ନଈରେ ସେମାନଙ୍କ ଦିନ କଟେ । ଖରାଦିନେ ଶଗଡ଼ । ପାଞ୍ଚଟା ଶଗଡ଼ ସାଙ୍ଗକୁ ଦଶଟା ଜଙ୍ଘା ଜଙ୍ଘା ବଳଦକୁ ଖୁଆଇ ପିଆଇ ତାଗଡ଼ା କରନ୍ତି ସେମାନେ । କାର୍ତ୍ତିକଠୁଁ ଜ୍ୟେଷ୍ଠ ଶଗଡ଼ରେ ମାଲବୁହା । ନିଳିଜଙ୍ଘା, କୁଶନପୁର, କାଁପଡ଼ା, ପଞ୍ଚପାଟଣାଠାରୁ ତଳମାଳ ବିଦେଇପୁର, ସୁଆଁ, ତିହାଡ଼ି ସାହି ପର୍ଯ୍ୟନ୍ତ ଶଗଡ଼ ଚାଲେ । ରାତାରାତି ଶଗଡ଼ ଚାଲିଥିବ । କେତେଥର ସଦେଇ ନିଜେ ଯାଇଛି ପିଲାଦିନେ ସେଇ ଶଗଡ଼ରେ । ବେଶି ମଜା ଚଇତିମାସ ପୂନେଇଁ ରାତିରେ । ପାଞ୍ଚଟା ଶଗଡ଼ ଚାଲିଥିବେ ଏକା ଧାଡ଼ିରେ । ସୁଲୁସୁଲିଆ ପବନ ଦଉଥିବ । ପୂନେଇଁ ଜହ୍ନ ଢଳି ପଡୁଥିବ ଅଧରାତିରେ ଆରପାଖ ଆକାଶକୁ । ପାଟ ଭୂଇଁର ଗୋହିରା ଗଛର ଥୁଣ୍ଟା ଥୁଣ୍ଟା କଣ୍ଟା ଡାଳ ସବୁ ପହଁରି ନଉଥିବ ଜହ୍ନ ଆଲୁଅରୁ ଚେନା ଚେନା ମୋତି । ସଦେଇ ବେଳେ ବେଳେ ଗୀତ ଗାଏ -

କିଏ ଯାଉଛ ହୋ ଶଗଡ଼ିଆ ଭାଇ,
ହାଉଲେ ହାଉଲେ ଚାଲ,
ରାତି ପାହିଗଲେ ସରିଯିବ ସିନା
ଭୁଆସୁଣୀ ପାଟ ବିଲ ।
ଭୁଆସୁଣୀ ପାଟେ କଣ୍ଟା ଗୋହିରା ହୋ
ଚିରିନିଏ କାନ ମୁଣ୍ଡ,
କାନ ମୁଣ୍ଡ ଭାଇ ଚିରିଗଲେ ତୋର
ଶୁଖିଯିବ ସିନା ତୁଣ୍ଡ ।

ଏଇମିତି ମନକୁ ଯାହା ଆସେ ସଦେଇ ବୋଲେ । ରାତି ଶେଷରେ ବେଳେବେଳେ ଶୋଇପଡ଼େ । ନିଦ ଭାଙ୍ଗେ ରମଜାନଚଚ୍ଚାର ଡାକରେ । ଉଠ୍ ସଦେଇ, ଏଇ ନେ ଦାନ୍ତକାଠି । ମୁହଁ ଧୋଇପକା । ଏଇତ ବିଦେଇପୁର ପହଞ୍ଚିଗଲେ । ମଝିରେ ସେଇ ଏକାଟିଆ ଅଶ୍ୱତ୍‌ଥ ଗଛ ମୂଳରେ ସରଯୂ ସାହୁର ଦୋକାନ । ସେଇଠିତ ମାଲ ଓହ୍ଲାଇବ, ସଦେଇ ଆଖି ଖୋଲେ । ଚାରିଆଡ଼େ ଯେତେ ଦୂରକୁ ଆଖି ପାଇବ ଖାଲି ବିଲ ଆଉ ବିଲ । ଧୂ-ଧୂ ଫାଙ୍କା । ପାଟ ଭୂଇଁ ମାଡ଼ିଯାଇଛି କାହିଁ କଉଁ ଦୂରକୁ... ଦୂରକୁ... । ମଝିରେ ମଝିରେ ଗୋହିରାଗଛ ଆଉ ଦୂରରେ ଗୋଟାଏ ଗୋଟାଏ କୁଦ ଉପରେ ଚାଳଘରର କେଇଟା ଗାଁ । ଚାଳରୁ ଧୂଆଁ ଉଠୁଥିବ । ଗାଈ ମଇଁଷିଙ୍କ ରଡ଼ି ଶୁଭୁଥିବ । ତଳମାଳରେ ଦହି, ଦୁଧ, ଛେନା, ଘିଅର ନଈ ବହିଯାଏ ବୋଲି ରମଜାନଚଚ୍ଚା କହେ । ସଦେଇ ଖଣ୍ଡ ଖଣ୍ଡ ମଇଁଷା ଦହି ଖାଇବାକୁ ଭଲ ପାଏ । ସେଇ ଲୋଭରେ ସେ ଆସେ ତଳମାଳକୁ । ଶଗଡ଼ ଦିନ ଚାଲିଗଲାଣି । ଏବେ ହେଲାଣି ଟ୍ରକ୍, ମିନିଟ୍ରକ୍ ଯୁଗ । ତଳମାଳର ଦୁର୍ଗମ ପାଟ ଭିତରେ ତିଆରି ହେଲାଣି ଉଁଚା ଉଁଚା ସଡ଼କ । କଡ଼େ କଡ଼େ ବର, ଓସ୍ତ, ଅର୍ଜୁନ ଗଛର ଚାରା ସବୁ ବଢ଼ି ଆସିଲାଣି । ଗଜା ଶିରୀଷ ଗଛରେ ଫୁଲ ବି ଧଇଲାଣି । ବୈଶାଖମାସିଆ ଶିରୀଷ ଫୁଲର ବାସନାରେ ପାଟ ଭୂଇଁର ବୈଶାଖୀ ଝାଞ୍ଜି ମହକି ଉଠିଲାଣି । ରମଜାନ୍‌ଚଚ୍ଚାର ପୁଅ ପୁତୁରାମାନେ, ସଦେଇର ପୁଅମାନେ କିଣିଥିବା ଟ୍ରକ୍ ଦୁଇଟା ଆଉ ଗୋଟାଏ ମିନି ଟ୍ରକ୍‌ର ଡ୍ରାଇଭର୍ । ପୁରୁଷ ପୁରୁଷର ସଂପର୍କ । ଧର୍ମ ଅଲଗା ହେଲେ କ'ଣ ହେବ, ସଭିଏଁ ତ ମଣିଷ । ଜନମ ବେଳକୁ ସଭିଏଁ ବାଳୁତ । ଜାତି ପତି କାହିଁ ? ମଲା ବେଳକୁ ସିନା ହିନ୍ଦୁ, ମୁସଲମାନ, କିରସ୍ତାନ । ଲଣ୍ଡା ପଣ୍ଡା । କିଏ ପଇତା ପକେଇଛି ତ କିଏ ଲୁଙ୍ଗି ପିନ୍ଧିଛି । ଜନମ ବେଳେ ସବୁ ବାଳୁତ ଖାଇବେ ମା'କ୍ଷୀର । ମଲା ବେଳକୁ କିଏ ଶାଗଖିଆ ତ କିଏ ପେଜଖିଆ । କିଏ ଛେଳିଖିଆ ତ କିଏ ଗୋରୁଖିଆ ତ ଆଉ କିଏ ଘୁଷୁରିଖିଆ । କା'ର ସଜ କ୍ରିୟା ତ କା'ର ଦଶ ଦିନରେ, ଆଉ ବା କା'ର ମାସକରେ । କା'ର ପୁଣି ସେଇ ଗୋଟିଏ ଦିନରେ ମଶାଣିରୁ ଫେରି ସବୁ ଶୁଦ୍ଧ । ସଦେଇ କିନ୍ତୁ ଗଲା କେଇ ଦିନ ହେଲା ଲକ୍ଷ୍ୟ କରିଥିଲା ଯିମିତି କଉଁଠି କ'ଣ ଗୋଟାଏ ଫାଟ ପଡ଼ିଛି ।

ସେଦିନ ସଦେଇ ମହାଜନ ରାତିରେ କିଛି ଖାଇଲା ନାହିଁ । ଘରେ ଅରନ୍ଧା ଅବଢ଼ା । ରାତି ସାରା ସାଧୁପୁର ବଜାରରେ ନିଆଁ ଜଳୁଛି । ପରଦିନ ସକାଳୁ ଖବର ପହଞ୍ଚିଲା ଦଙ୍ଗା ମାଡ଼ିଯାଇଛି ଉପର ତେଲୀ ପଟି, ଗୁଡ଼ିଆ ପଟି ଆଉ ତାମିଳି ପଟି ଆଡ଼କୁ । ସବୁ ପୋଡ଼ି ପାଉଁଶ । ଝୁନ୍‌ଝୁନ୍‌ୱାଲାର ଦି'ଟାଯାକ କୋଠା ପୋଡ଼ି ଫାଟିଗଲା । କୋଟି କୋଟି ଟଙ୍କାର ଲୁଗା କପଡ଼ା ପୋଡ଼ି ପାଉଁଶ ହେଇଗଲା । ଗୁପ୍ତା ଘର ଲୁହା ଗରାଦ ଭିତରେ ଲକ୍ଷ ଲକ୍ଷ ଟଙ୍କାର ନୋଟ ପାଉଁଶ ବିଡ଼ା ହେଇଗଲା । ଅଗ୍ରୱାଲାର ଲୁହା ଗରାଦଟା ପଛପଟ କଳମି ବଣ ଭିତରେ ପଡ଼ିଛି ଭଙ୍ଗା ହେଇ । ବେହିସାବ

ଟଙ୍କା ଲୁଟି ହେଇଛି । ଭୁଷାମାଲ ପଟିର ଦାଣ୍ଡରେ ଆଣ୍ଠୁଏ ବହଳର ଡାଲି ଆଉ ତେଲ ମିଶାମିଶି ପଙ୍କ ହେଇ ଜମିଯାଇଛି । ବନସ୍ପତି ଘିଅ ଟିଣ, ବିସ୍କୁଟ ପେଟି, ଅମୁଲ ଦୁଧ ପେଟି ଏସବୁ ଗଡ଼ିଆରେ, ନର୍ଦ୍ଦମାରେ, ନାଳରେ ଗଡୁଛି । ଶର୍ମାଘର ବଡ଼ ଦି ଭାଇ ମାଡ଼ ଖାଇ ବେହୋସ ହେଇ ପଡ଼ିଛନ୍ତି । ପୁଟୁକାବାଲାର ଭୁଷାମାଲ ଦୋକାନ ଭିତରେ ବାପ ପୁଅ ପୋଡ଼ି ହେଇ ମରିଛନ୍ତି । ତାମିଳି ପଟିର ସବୁଗୁଡ଼ାକ ଲୁହାଲକଡ଼ି ମାଲ ତରଳିଯାଇ ଏକାକାର । ଆଉ... ଆଉ... ତା'ର ଦଶପୁରୁଷର ସାଧୁପୁର ହାଟ ଦୋକାନ, ଗୋଦାମଘର ସହିତ ଗଦାଏ ପାଉଁଶରେ ପରିଣତ ହେଇଯାଇଛି । ମଝିଆଁପୁଅ କହିଲା - କିଛି ଡରିବାର ନାହିଁ । ସବୁଗୁଡ଼ାକ ବୀମା କଂପାନୀ ଦେଇଦେବ । କିନ୍ତୁ ସଦେଇ ଖାଲି ବିଳବିଳେଇ କହିଲା - ମୋର ଦଶପୁରୁଷର ସନ୍ତକ କିଏ ଦବରେ ପବନା ? ତୁମେ ସିନା ଟଙ୍କା ପାଇବ, ନୂଆ ଘର କରିବ । ନୂଆ ବେଉସା ଚଳେଇବ । ହେଲେ ମୋର ଦଶ ପୁରୁଷର ସାଇତା ପସରା ପସରା ସରାଗ କିଏ ଦବରେ ? ତୁଳାଧର ବେପାରୀ ଘରର ପିଲା ସଦେଇ । ସାଧୁପୁର ବଜାର ବସିବା ଦିନଠଉଁ ତା'ର ବଂଶର ବେପାର ସେଠି । ବଡ଼ବଡୁଆଙ୍କଠଉଁ ଶୁଣିଛି - କିଜାଣି କଉଁ କାଳର କଥା । କେତେ ଶହ ବରଷ ତଳର କଥା । ସେତେବେଳେ ମରହଟ୍ଟାଙ୍କ ଦାଉରେ ମୁଗଲ ବାଦଶାହମାନେ ଥରିଲେଣି । ମରହଟ୍ଟାମାନେ ଧାଡ଼ି ଦଉଥା'ନ୍ତି । ଏବକାର ସାଧୁପୁର ବଜାର ସେତେବେଳେ ନ ଥାଏ । ଜଗନ୍ନାଥ ସଡ଼କ ଲମ୍ବିଯାଇଥାଏ ସାଳନ୍ଦୀ କୂଳ ଦେଇ ବୈତରଣୀ ବିରଜେଇ ବାଟେ... ତଳେ ତଳେ କେନ୍ଦ୍ରାପଡ଼ା ବଳଭଦ୍ର, କାକଟପୁର ମଙ୍ଗଳା, ପ୍ରାଚୀ ନଈ, କୋଣାର୍କ, ରାମଚଣ୍ଡୀ ଦେଇ ପୁରସ୍ତମ । ଦକ୍ଷିଣା ସାଧୁ ଆସି ମଠ ଥାପିଲେ ସାଳନ୍ଦୀ କୂଳରେ । ମହାତ୍ମା ବୈଷ୍ଣବ ରାମାନୁଜଙ୍କ ଚେଲା । ଲଣ୍ଡାମୁଣ୍ଡ, କପାଳରେ ରାମାନନ୍ଦୀ ତିଳକ । ଧଳା ଶିଖା ଦୁଇଟି ମଝିରେ ସିନ୍ଦୂର ଶିଖାଟିଏ । ଲକ୍ଷ୍ମୀନାରାୟଣଙ୍କ ଯୁଗଳ ମିଳନ । ମଠରେ ଥାପିଲେ ଆଣ୍ଠୁଆଗୋପାଳ ସାଙ୍ଗକୁ ରାଧାକୃଷ୍ଣଙ୍କ ଯୁଗଳ । କଥା ହେଲା - ଏଇ ଜଙ୍ଗଲୀ ମୁଲକ୍‌ରେ ପୁରସ୍ତମ ଯିବା ବାଟରେ ସାଧୁ ସନ୍ଥମାନେ ଚଟିଘରେ ବାର ହିନସ୍ତା ହେଉଛନ୍ତି । ଡକେଇତ ସାଙ୍ଗକୁ ସାଳନ୍ଦୀ କୂଳରେ ଏଠି ସେଠି ବସ୍ତି ବାନ୍ଧିଥିବା ମୁଗଲ ବାଦଶାଙ୍କ ଚେଲା ଚାମୁଣ୍ଡାଙ୍କ ଆତଙ୍କ । ଉତ୍ତରରେ ବାଲେଶ୍ୱରର ଫିରିଙ୍ଗି କାରଖାନା ଆଉ ଦକ୍ଷିଣରେ ବିରଜେଇଙ୍କ ମଝିରେ କେଉଁଠି କିଛି ବଜାର ନାହିଁ । ରାମାନୁଜୀ ସାଧୁ ବଜାର ବସେଇଲେ । ବିରଜେଇରୁ ଆଣିଲେ ତୁଳାଧର ତେଲୀ ବୈଶ୍ୟ ସାଙ୍ଗକୁ ଅମୃତ ମଣୋହି ଯୋଗେଇବା ପାଇଁ ମଧୁ ବୈଶ୍ୟ ଗୁଡ଼ିଆ ପରିବାର । ମଠକୁ ଲାଗି ବସେଇଲେ ବାହ୍ମଣ ଶାସନ । ମଠରେ ସାଧୁ, ସନ୍ଥ, ଜମାଉତମାନଙ୍କର ଭିଡ଼ ଜମିଲା । ରାମାନୁଜୀ ସାଧୁଙ୍କ ନାଁରେ ସାଧୁପୁର ବଜାର ସାଙ୍ଗକୁ ଜମିଲା ସାଧୁପୁର ହାଟ । ସଦେଇର ପୂର୍ବପୁରୁଷ ଯାଜପୁରରୁ ଆସିଛନ୍ତି ସାଧୁପୁରକୁ । ତୁଳାଧର ବୈଶ୍ୟ ପରିବାରରେ ଓଜନ ଠକାମି ନାହିଁ । ମିଶାମିଶି ନାହିଁ । ଜିନିଷ ଥିଲେ ନାହିଁ କରିବା ନାହିଁ । ମଠ ମହନ୍ତ ମନୁ, ପରାଶର

ଋଷିମାନଙ୍କ ଲେଖା ପଢ଼ି ତୁଳାଧର ବୈଶ୍ୟ ଆଉ ଅମୃତ ମଣୋହି ଗୁଡ଼ିଆଙ୍କୁ ଏ ସବୁ ବୁଝେଇ ଦେଇଥିଲେ । ଗୋପାଳଜୀଉଙ୍କ ପାଇଁ ମଣୋହି ହେଲା ମାଲପୁଆ ଆଉ ପାଳୁଅ ଲଡୁ । ମଣିଆ ସାହୁର ସେ ଯଉଁ ମଇଁଷିଆ ଘିଅରେ ଛଣା ଯାଜପୁର ଗୁଡ଼ ଆଉ ପଶ୍ଚିମା ଗହମ ଅଟାରେ ପାନମହୁରୀ ଦିଆ ବାଦାମୀ ରଙ୍ଗର ତାଜା ମାଲପୁଆ... ଆଃ, ତା' ସାଙ୍ଗକୁ ଧନୀ ସାହୁର ଖଇରିଆ ରଙ୍ଗର ମୁଷୁମ୍ ମୁଷୁମ୍ ପାଳୁଅ ଲଡୁ... । ସଦେଇର ଅଜାଣତରେ ତା' ପାଟିରୁ ଲାଳ ଗଡ଼ି ଆସିଥିଲା ସେଦିନର ସେଇ ଘୋର ଦୁର୍ଦ୍ଦିନରେ ମଧ୍ୟ । ରସଗୋଲା ଆଉ ପାନତୁଆ କେତେ ଦିନର କି ? ସେଗୁଡ଼ା ତ ହେଇ ସେଦିନ ଆସିଛି କଲିକତାର ବାଗବଜାରରୁ ।

କିଜାଣି କେତେଦିନ ପରେ ଆସିଲେ ତାମିଳି । କିଏ କୁହେ ସେମାନେ ବଂଗଳାର ତାମ୍ରଲିପିରୁ ଆସିଛନ୍ତି ବୋଲି ତାମିଳି । ଆଉ କିଏ କୁହେ ସେମାନଙ୍କର ତାମ୍ବୁଲ ଚାଷ ଥିଲା ବୋଲି ସିଏ ତାମ୍ବିଳି । ଖଣ୍ଡିଖଣ୍ଡିକିଆ ବଙ୍ଗଳା କଥା କହନ୍ତି । ପହିଲୁ ପହିଲୁ ଝଗଡ଼ାଝାଣ୍ଟି ହେଲା । ହେଲେ ତେଲୀ ବଉଁଶ ସେତେବେଳକୁ ବଢ଼ିଗଲେଣି । କହିଲେ ବେବସା କରିବ ତ ଭୁଷାମାଲ ଛାଡ଼ । ତମ ପାନବରଜ ନେଇକି ଥାଅ । ସତ କଥା ତାମିଳିମାନେ ଭୁଷାମାଲ ଛାଡ଼ି ବଙ୍ଗାଳୀ ଶାଢ଼ି ଆଉ କିସମ କିସମର ଫେଶନ ମାଲ ସବୁ ସଜେଇ ଦେଲେ ଦୋକାନରେ । ସାଧୁପୁର ହାଟ ଜମିଲା ବେଶ୍ । ହେଇ ସେଦିନ ଆସିଲେ ମାରୱାଡ଼ି । ସେ ତ ସଦେଇର ଗୋସାପ ପଣଗୋସାପ ବଞ୍ଚିବା ବେଳର କଥା । ଶହେଟା ବରଷ ବି ହେବ ନାହିଁ । ଫିରିଙ୍ଗିମାନଙ୍କର ଘନାଶାସନ । ସଦେଇର ଗୋସାପର ସାଙ୍ଗ ହଉଛି ଦୁର୍ଗା ଅଗ୍ରୱାଲାର ଗୋସାପ । ସାଙ୍ଗରେ ଖାଲି ଲୋଟା କମ୍ବଳ ଆଣିଥିଲେ କ'ଣ ହେବ ? ମୁଣ୍ଡରେ ଥିଲା ବୋଝେ ବୋଝେ ବେପାରୀ ବୁଦ୍ଧି । ସେମାନେ କାଳେ ମିଶାମିଶି, ଦଣ୍ଡିମରା କରନ୍ତି । କିଜାଣି ସଦେଇର ତ ହୋସ ହେବା ଦିନଠୁ ସେ ନଜର ନାହିଁ । ଜର୍ମାନୀ ଯୁଦ୍ଧ ବେଳେ ତ ସଭିଏଁ କଳାବଜାରୀ କରିଛନ୍ତି । ଖାଲି ମାରୱାଡ଼ିଙ୍କ ଦୋଷ କାହିଁକି ? ପଶ୍ଚିମା ମାରୱାଡ଼ିମାନେ ତାମିଳିଙ୍କ ଜାଗାରୁ ଭଡ଼ା ନେଇ ଦୋକାନ କଲେ । ଦେଖୁ ଦେଖୁ କି ବଜାର ? ବାବ୍‌ବା, ମାନିବାକୁ ହେବ ବେପାରୀ ବୁଦ୍ଧି । ସାଧୁପୁର ବଜାର ସାଙ୍ଗରେ ସପ୍ତାହରେ ଦି'ଥର ବସୁଥିବା ସାଧୁପୁର ହାଟ ଖାଲି ଘୋ-ଘୋ ଗର୍ଜିଲା । ବଢ଼ିଲା ବଢ଼ିଲା ଯେ କି ବାଲେଶ୍ୱର ନା କି ଯାଜପୁର । ସଦେଇ ବେଳକୁ ସାଧୁପୁର ହେଲା ଖଣ୍ଡମଣ୍ଡଳରେ ବଡ଼ ବଜାର । ସେଇ ବଢ଼ିବା ଭିତରେ ସଦେଇର ଗୋସାପ ଅମଳରୁ ତଳ ତେଲୀପଟି ବି କିଛି କମ୍ ବଢ଼ି ନାହିଁ । ବଜାର ମାଡ଼ିଆସିଲା ଉପର ତେଲୀପଟିରୁ ତଳ ତେଲୀପଟିକୁ । ଆଉ ତା' ତଳକୁ ମାରୱାଡ଼ି ପଟି । ତାମିଳି ପଟି ରହିଲା ଉପର ଆଡ଼କୁ ବେଶି । ଲାହା, ନନ୍ଦୀ, ସେନ୍ ଆଉ ମଲ୍ଲିକ ସାଙ୍ଗିଆ ନେଇ ତାମିଳିମାନେ ବି ଜମେଇ ଦେଲେ ଲୁହା ଲକଡ଼ି ସାଙ୍ଗକୁ କଲିକତି ଫେଶନ ଦରବ । ବାଃ, ସାଧୁପୁର ବଜାର ହେଲା ସ୍ୱର୍ଗ । ଯାହା ଖୋଜିଲ

ତାହା ମିଳିଲା । ରେଳ ବୋଝେଇ ଡବା ଡବା ମାଲସବୁ ମାରୱାଡ଼ି ପଟି ଗୋଦାମ ଭିତରେ ଭର୍ତ୍ତି ହେଇଗଲା । ସାଧୁପୁର ବଜାର ତେଲୀ, ତାମିଲି କି ମାରୱାଡ଼ିଙ୍କ ବଜାର ହେଇତ କେବେ ରହି ନାହିଁ । ସେ ହେଇଛି ସାଧୁପୁର ବଜାର । ତାକୁ ବଢ଼େଇଛନ୍ତି ସବୁ ଜାତିର ଲୋକେ । ତାକୁ ସଜେଇଛନ୍ତି ସବୁ ଧର୍ମର ଲୋକେ । ସିକନ୍ଦରଭାଇର ସିଲାଇ ଦୋକାନ ସାଙ୍ଗକୁ ଅଲଫିତରଭାଇର କାନପୁରୀ ଜୋତା ଦୋକାନ ସାଧୁପୁର ହାଟରେ ଦରଘା ମହଲିଆଙ୍କ ଗୋରୁ ଆଡ଼ତ । ସାଧୁପୁର ହାଟ କାହାରି ହେଇ ରହି ନାହିଁ । ସମସ୍ତେ ହେଇଛନ୍ତି ସାଧୁପୁର ହାଟର । ସମସ୍ତେ ବଞ୍ଚିଛନ୍ତି ସାଧୁପୁର ହାଟରୁ । ଘରକ ଆଜି ଦଶ ଘର କୋଡ଼ିଏ ଘର ହେଇଛି । ଅଥଚ ଆଜି ନିଜ ଘରକୁ ନିଜେ ପୋଡ଼ି ଦେଲେ...

ସଦେଇର ହଠାତ୍ ମନେ ପଡ଼ିଗଲା - ତା ଗୋଦାମର ଭିତର ମହଲରେ ଥିଲା କୋଉ ପୁରୁଷର ହାତତିଆରି ଗଜଲକ୍ଷ୍ମୀ ଛବିଟିଏ । କାଚ ବନ୍ଧେଇ । ତାକୁ କାଳେ ତା ଗୋସିମା ଆଣିଥିଲା ତା' ବାପଘରୁ । ଆଉ ସେଇ ଛବିଟି ଆଣିବା ଦିନଠୁଁ କାଳେ ତାଙ୍କ ଘରେ ଅକଳନ୍ତି ଧନ ଭର୍ତ୍ତି ହେଇଗଲା । ଗୋସିମା ଥିଲା ଲକ୍ଷ୍ମୀ ସଯୁଆଁ । ସଦେଇ ତାକୁ ଦେଖି ନାହିଁ । ତା' କଥା ଖାଲି ଶୁଣିଛି । ଛୋଟ ଛୋଟ ପାହୁଲ ଯୋଡ଼ିଏ । ହାତୀ ପାହୁଲ ଭଳି ସମାନ ହେଇ ତଳେ ପଡ଼େ ଯେ ଲକ୍ଷ୍ମୀ ପାଦ ଭଳି ଦାଗ ସବୁ ଭୂଇଁରେ ଆଙ୍କି ହେଇଯାଏ । ମଗୁଶୀର ମାସରେ ଲକ୍ଷ୍ମୀ ପାହୁଲ ଝୋଟି ଦେବା ବେଳେ ମାଇପିମା'ନେ କାଳେ କହନ୍ତି - ଆଲୋ ଲଳିତାଦେଈ ପାହୁଲ ଭଳି ଆଙ୍କୁନୁ । ଏମିତି ମଝି ଖାଲୁଆ କରୁଛୁ କ'ଣ ବା ? ଲକ୍ଷ୍ମୀ ପାଦ ଦେଖିବୁ ତ ଲଳିତାଦେଈ ପାଦ । ଗୋସିମା ପରଠୁଁ ତା' ମା ସତିଆ ଆଉ ସ୍ତ୍ରୀ ରୁକୁଣୀ ପର୍ଯ୍ୟନ୍ତ ତିନିପୁରୁଷ ଧରି ସେଇ ଛବି ଥିଲା ତାଙ୍କ ରହିବା ଘରେ । ନୀତିନିୟମରେ ମାଣବସା ସୁଦଶା ସବୁ ହୁଏ । ରୁକୁଣୀ ପରଠୁଁ ଆଜିକାଲିକା ବୋହୂମାନେ ଆଉ ନୀତିନିୟମ ମାନିଲେ ନାହିଁ । ସଦେଇ ସେଇ ଛବିଟି ନେଇ ରଖିଦେଇଥିଲା ଗୋଦାମଘର ଭିତର ପୁରରେ । ରୋଜ ପୁରୋହିତ ଶଙ୍କରାନନ୍ଦା ପୂଜା କରେ । ହେଲେ ଲକ୍ଷ୍ମୀ ପୂଜାର ଆଗ ମହକ ଆଉ କାହିଁ ? ମଗୁଶୀର ମାସର ଭୋରୁ ଭୋରୁ ଦାଣ୍ଡ ଛେରାପହଁରା । ଆଗ ରାତିରୁ ଝୋଟି ଦିଆ । ଲକ୍ଷ୍ମୀପାଦ ଉପରେ ମା ସଜେଇ ଦିଏ ଧାତ୍ରୀ ଅଁଳା ପତ୍ର ଲେଛା ସାଙ୍ଗକୁ ଦାସକେରାଣ୍ଡିଫୁଲ । ଘର ମହକିଯାଏ ଶିମିଳିପାଳ ଜଙ୍ଗଲର ଅସଲି ଝୁଣା ଧୂଆଁରେ । ଶଙ୍ଖ ହୁଳହୁଳି ସାଙ୍ଗରେ ସୂର୍ଯ୍ୟ ଉଠିବା ବେଳକୁ ପୂଜାଘରେ ଘିଅ ଦୀପ ଜଳି ଧାନ ମାଣିକା ପାଖରେ ବାଳଭୋଗ ସରିଥାଏ । ଗଜାମୁଗ, ପାଚିଲା କଦଳୀ ସାଙ୍ଗକୁ ପଞ୍ଚାମୃତ । ବିଛଣାରୁ ଉଠିବା ବେଳକୁ ସଦେଇ ଶୁଣେ ମା' କଣ୍ଠରୁ ଲକ୍ଷ୍ମୀପୁରାଣ - ନମସ୍ତେ କମଳା ମାଗୋ ସାଗର ଦୁଲଣୀ, ନମସ୍ତେ ନମସ୍ତେ ଲକ୍ଷ୍ମୀ ବିଷ୍ଣୁଙ୍କ ଘରଣୀ । ମା' ବାଛି ବାଛି ବୋହୂ ଆଣିଥିଲା ତା'ର ମାମୁଘର ଗାଁରୁ । ସାଳନ୍ଦୀ ନଈର ଉପର ମୁଣ୍ଡରେ ପାହାଡ଼ ମୂଳିଆ

ତାଳବଣି ଗାଁ । କହିଲା, ବୋହୂ ଆଣିବି ଯେ ଚନ୍ଦ୍ରଉଦିଆ । ଯିଏ ମୋ ବାଟରେ ଚାଲିବ ! ଗୁଣ୍ଠୁଣୀ ହାତୀ ଭଳି ଚାଲି । ମୁହଁ ଥିବ ମିଣିପଙ୍କ ପାଦ ଉପରେ । ମନ ଥିବ ଘର ମଣିଷର ସୁଖ-ଦୁଃଖ ଭିତରେ । ମୁହଁକୁ ଚନ୍ଦ୍ର ସୂର୍ଯ୍ୟ ଦେଖି ନ ଥିବେ । ପହିଲୁ ଦେଖିବ ଗିରସ୍ତ । ସତକୁ ସତ ଚଉଠି ରାତିର ନିଝୁମ୍ ଭିତରେ ସଦେଇ ଯେତେବେଳେ ରୁକୁଣୀର ଓଢ଼ଣାଟା ଜୋର୍ କରି ଖୋଲିଦେଲା, ତାକୁ ଲାଗିଲା ଯିମିତି କୁଆଁର ପୂନେଇଁ ଜହ୍ନର ପହିଲି ଝାଙ୍କିଟା ତା'ରି ଉପରେ ଅଜାଡ଼ି ହେଇ ପଡ଼ିଲା । ଦାସକେରାଣ୍ଟି ଫୁଲିଆ ଚେହେରା ଉପରେ କଇଁଫୁଲିଆ ମୁହଁଟା ଲାଜରେ ଭୋଦୁଅ ମାସର ସଞ୍ଜ ଫୁଟା ରଙ୍ଗଣୀ ଫୁଲ ଭଳି ହେଇ ଯାଇଥାଏ । ଆଖି ଦି'ଟା ଅଶିଣ ମାସର ଭସା ବାଦଲ ଭଳି । ନାକରେ ସୋରିଷଫୁଲିଆ ସଇ ସୁନାର ନୋଥଟା କାନ ଯାଏ ଘେରି ରହିଥାଏ । ସଦେଇ ଚାହିଁରହିଲା । ଘର କଣରେ ଦୀପଟା ଜଳି ଜଳି ଥକିଗଲାଣି । ଏଇନେ ଆଖି ବୁଜିଦବ କି କ'ଣ । ଲୋଭ ସମ୍ଭାଳି ନ ପାରି ଡାହାଣହାତର ବୁଢ଼ା ଆଙ୍ଗୁଳି ଆଉ ମଝି ଆଙ୍ଗୁଳିରେ ରୁକୁଣୀର ବାଁ ପଟ ଗାଲଟାକୁ ଚିପି ଧରିଲା । ତାକୁ ଲାଗିଲା ବିଷ୍ଣୁଗୁଡ଼ିଆର ପିତଳ ପରାତରୁ ସେ ଯିମିତି ଟଟକା ପାନତୁଆଟାଏ ଉଠେଇ ଧରିଛି । ସଜ ଛେନାରେ ତିଆରି ମଇଁଷି ଘିଅରେ ଭଜା ରସ ପୁଚୁ ପୁଚୁ ପାନତୁଆଟା ସଦେଇ ଆଙ୍ଗୁଳି ଚାପରେ ଚିପି ହେଇଯାଇଛି ଆଉ ତା' ଦିହରୁ ଝରି ପଡୁଛି ବଡ଼ ଅଳେଇଚ ବାସ୍ନାରେ ମହକି ଉଠୁଥିବା ରସଗୁଡ଼ା ଟୋପା ଟୋପା ହେଇ । ସଦେଇର ଚେତା ଫେରିବା ବେଳକୁ ଦୀପଟା ଲିଭିଯାଇଥିଲା ।

ତା'ପରଠାରୁ ରୁକୁଣୀର ଅକ୍ତିଆର ଭିତରେ ସେ ରହିଯାଇଛି । ରୁକୁଣୀ ଯାହା କହିଛି, ତା' କରିଛି । ଦୋକାନରୁ ଯିବାବେଳେ ଯଉଁଦିନ କବାଟ କଣରୁ ମୁହଁ ଲୁଚେଇ ରୁକୁଣୀ କହିବ ଆଜି ସଅଳ ଆସିବ, ସେଦିନ ସଦେଇ ପହିଲି ବିଲୁଆ ଡାକିବାକୁ ଘରେ ହାଜର । ତାଗଦା ଯିବାବେଳେ ଯଦି ରୁକୁଣୀ ମନା କରିଛି ତ ସେଦିନ ତା'ଗୋଡ଼ ଦି'ଟା ଅଟକି ଯାଇଛି ଦୁଆର ବନ୍ଧ ଭିତର ପାଖରୁ । କେମିତି କେଜାଣି ସେ ବୁଝିପାରିଛି ରୁକୁଣୀ ରାଗିଗଲେ କି ଅଭିମାନ କଲେ ଲକ୍ଷ୍ମୀଛଡ଼ା ଜଗନ୍ନାଥଙ୍କ ଭଳି ସେ ବି ଖାଇବାକୁ ପାଇବ ନାହିଁ । ଭିକମଗା ଖଇ ଗଣ୍ଡିକ ବି ଉଡ଼ିଯିବ । ସମୁଦ୍ର ପାଣି ଶୁଖିଯିବ । ନିଆଁ ଜଳିବ ନାହିଁ କି ପାଣି ତାତିବ ନାହିଁ । ଅଲକ୍ଷ୍ୟରେ ତା'ର ମନେ ପଡ଼ିଯାଏ କଉଁଠି ଗୋଟାଏ ଛବିରେ ଦେଖିଥିବା ଅନ୍ନପୂର୍ଣ୍ଣା ଆଉ ଶିବଙ୍କର ମୂର୍ତ୍ତି । ଅନ୍ନପୂର୍ଣ୍ଣା ବସିଛନ୍ତି ରତ୍ନ ସିଂହାସନରେ । ସୁବର୍ଣ୍ଣ ଚଟୁରେ ବାଢ଼ି ଦଉଛନ୍ତି ଖିରି ଆଉ ବାଘଛାଲ ପିନ୍ଧା ଜଟିଆ, ପେଟୁଆ, ବିକଳିଆ ଶିବ ଝୁଲି ମୁଣା ଧରି ଭିକ ଥାଳ ପତେଇ ଦଉଛନ୍ତି । ସଦେଇ ଘଡ଼ିକ ପାଇଁ ଥମିଯାଏ । ଏ କି କଥା ? ସବୁ କଥାରେ ପୁରୁଷକୁ ଅନାଏ ଯଉଁ ସ୍ତ୍ରୀ - ପୁରୁଷର ବାହୁବଳ ଉପରେ, ଦୟା ଉପରେ, କଟକଣା ଭିତରେ ବଞ୍ଚିରହେ ଯଉଁ ସ୍ତ୍ରୀ - ଅଭିଆଡ଼ୀ ବେଳେ ବାପ ଉପରେ, ବାହା ହେଲେ ଗେରସ୍ତ ଉପରେ, ବୟସ ହେଲେ ପୁଅ ଉପରେ ଭାରା ଦିଏ ଯଉଁ ସ୍ତ୍ରୀ,

ପୁରୁଷ ପୁଣି ହାତ ପତେଇ ଭିକ ମାଗେ ସେଇ ସ୍ତ୍ରୀ ପାଖରେ । ସେ କିଛି ବୁଝିପାରେ ନାହିଁ । ଥରେ ଥରେ ଇମିତି ବି ହେଇଛି - ସେ ଖାଇ ବସିଛି ଆଉ ରୁକ୍ମଣୀ ବାଢ଼ି ଦଉଛି । ପଚାରୁଛି ବିରିଡାଲିଟା କିମିତି ହେଇଛି ? ମାଛବେସରଟା ଖାଉନ ଯେ ? କେତେ ଦିନ ପରେ ସନିଆଁ ମାଝି ପବତା ମାଛ ଆଣିଥିଲା । ତୁମେ ଭଲ ପାଅ ବୋଲି ମୁଁ ସବୁତକ ତା' ପାଖରୁ ରଖି ଦେଇଛି । କଲରା ଚଡ଼ଚଡ଼ିରେ ତ ହାତ ମାରୁନ । କ'ଣ ଖରାପ ହେଇଛି କି ? ବଡ଼ି ଦି'ଟା ରହିଯାଇଥିଲା ଯେ ଗମୁଆ ଲାଗୁଥିବ... ସଦେଇକୁ କିଛି ଶୁଭେ ନାହିଁ । ତାକୁ ଲାଗେ ରୁକ୍ମଣୀ ବାଢ଼ି ଦଉଛି ଆଉ ସେ ଥାଳ ପତେଇ ଦେଇଛି । ହାତଟା ତା'ର ଥାଳିରେ ଲାଗିଯାଇଛି ଯେ ଆଉ ଉଠୁନି । ତା' ଆଗରେ ରୁକ୍ମଣୀ ବସିଛି ରତ୍ନ ସିଂହାସନରେ । ଚମ୍ପାଫୁଲିଆ ପାଟ ଶାଢ଼ିରେ ମନ୍ଦାରଫୁଲିଆ ନାଲିଧଡ଼ି । ଆୟ ଅଳଙ୍କାରରେ ଦିହ ଚମକି ଉଠୁଛି । ଝୁଣା ଧୂଆଁରେ ଦିଗ ମହକି ଉଠୁଛି । ଶଙ୍ଖ ହୁଳହୁଳିରେ ଘର ଦୁଲୁକି ଉଠୁଛି । ଚମକ ଭାଙ୍ଗିଛି କେତେବେଳ ପରେ ଯେତେବେଳେ ରୁକ୍ମଣୀ ତାକୁ ହଲେଇ ଦେଇ କହିଛି - ମଲା, ମଲା, ଇଏ କ'ଣମ ?

ସଦେଇର ଆଖି ଲାଗି ଲାଗି ଆସିଛି । ପବନା ଘର ଭିତରକୁ ପଶିଆସି କହିଲା - ବାପା, ଦଙ୍ଗା ଥମିଗଲାଣି । ତେବେ ନିଆଁ ପୂରା ଲିଭି ନାହିଁ । ଦମକଳବାଲା ଲାଗିଛନ୍ତି । ହଁ, ଆଇତି କରିନେବେ । ମୁଖ୍ୟମନ୍ତ୍ରୀ, ସାଧୁପୁର ଏମ୍.ଏଲ୍.ଏ., କଲେକ୍ଟର, ଏସ୍.ପି. ସମସ୍ତେ ବୁଲି ବୁଲି ଦେଖୁଛନ୍ତି । ଯାହାର ଯାହା ଯାଇଛି ସେ ସବୁର କ୍ଷତିପୂରଣ ଦିଆଯିବ ବୋଲି ମୁଖ୍ୟମନ୍ତ୍ରୀ ଘୋଷଣା କରିଛନ୍ତି । ଆମର ତ ସବୁ ଇନ୍‌ସୁରେନ୍ସ ଅଛି । ତା' ଉପରେ ଆମେ ବି ଦେଖେଇଦବା ତିନି ଲକ୍ଷ ଟଙ୍କାର କ୍ଷତି । ତୁମେ କିଛି ଚିନ୍ତା କର ନାହିଁ ବାପା ! ସାନଟା କଟକରୁ ଏସ୍.ଟି.ଡି. କରିଥିଲା । ସେ ଭଲରେ ଅଛି । କଟକରୁ ବସ୍ ବନ୍ଦ । ସେ କାଲି ସକାଳେ ଧଉଳିରେ ଆସି ପହଞ୍ଚିବ । ଧୀରେ ଧୀରେ ଲୋପ ପାଇଯାଉଥିବା ଚେତା ଭିତରେ ସଦେଇ ପଚାରୁଥିଲା - କ୍ଷତିପୂରଣ ? କି କ୍ଷତିପୂରଣ କିଏ ଦବରେ ? ମୋ ଦଶ ପୁରୁଷର ସାଧୁପୁର ହାଟ ପାଇଁ କିଏ କ୍ଷତିପୂରଣ ଦବ ? ମୋ ଲକ୍ଷ୍ମୀ ଫଟ ପାଇଁ କିଏ କ୍ଷତିପୂରଣ ଦବ ? ସେମାନେ ସବୁଦିନ ପାଇଁ ଚାଲିଗଲେ । ଆଉ ଫେରିବେ ନାହିଁ ।

ସଦେଇ ମହାଜନର ଆଖି ଦି'ଟା ବନ୍ଦ ହେଇଗଲା । ଆଉ ଖୋଲିଲା ନାହିଁ ।

[୧୯୯୭]

ନାଲଟିଏ ଖୋଳାହେଲା । ସେଇଟା ଏବକାଳର କଥା । ବ୍ରିଟିଶ ରାଜତ୍ୱ ବଡ଼ ଜୋର୍‌ସୋର ସେତେବେଳେ ଭାରତରେ ଚାଲିଥାଏ । ସେଇ ନାଳଟା ହେଉଁ ହେଉଁ ମଠର ନାମ ହେଲା ନାଳକୂଳ ମଠ ।

ନାଳକୂଳ ମଠର ଇତିହାସ ପୋଥି ବେଳେବେଳେ ଟହଲିଆଣୀ ହାଉଡ଼ୀମା'ର ଅଧା ପାକୁଆ ପାଟିରୁ, ବିଲାତ ଫେରନ୍ତା ଗବେଷକଙ୍କ ଲେକଚର ଭଳି ଭକ ଭକ ହୋଇ ବାହାରି ଆସେ । ପହିଲୁ ବାବାଜି ହେଲେ ହରିଦାସ ବାବାଜି, ତାଙ୍କ ଚେଲା ନରିଦାସ ବାବାଜି, ତାଙ୍କ ଚେଲା ରାମ ଦାସ, ତାଙ୍କ ଚେଲା କୃଷ୍ଣଦାସ, ସବା ଶେଷରେ ହେଲେ ଅନନ୍ତ ଦାସ । ବାବାଜିଙ୍କ କଥା ବଖାଣିଲା ବେଳେ ହାଉଡ଼ୀମା'ର ହୃଦୟର ସମସ୍ତ ଅନୁଭୂତି ଯେପରି ସାଳନ୍ଦୀ ନଈର ବଢ଼ିପାଣି ଭଳି ବାହାରି ଆସେ । କଥାରେ ବାଟୁଳି ବାଜେନା । ସତେ ଯେମିତି ନିଜର କେହି ଧରମଭାଇ କି ପୁଅର ବାପ । ଦୁଃଖର କଥା କହିଲାବେଳେ ଆଖିରୁ ପାଣି ବହି ପଡ଼େ; ସୁଖର କଥା କହିଲାବେଳେ ଛୋଟିଆ ଛୋଟିଆ ଆଖି ଦୁଇଟା କୋଟର ଭିତରୁ ବାହାରିଆସେ । ପାକୁଆ ପାଟିରୁ ହସର ଫୁଆରା ଛୁଟେ । ଅନନ୍ତ ଦାସ ବାବାଜି କେଡ଼େ ଭଲ ଲୋକ ଥିଲେ । ଡଉଲଡାଉଲ ହେଇ ଆମ୍ବୁଆ ଚେହେରାର ଲୋକ । ମୁଣ୍ଡର ତାଳୁ ପାଖରେ ଗୋଛେ ଚୁଟି ବେକ ପର୍ଯ୍ୟନ୍ତ ଓହଳିଥାଏ । କପାଳର ତିଳକଟା ନାକ ଅଗରୁ ତ୍ରିକୂଟ ଦେଇ ମୂର୍ଦ୍ଧା ପର୍ଯ୍ୟନ୍ତ ଉଠିଯାଇଥାଏ । ଆଣ୍ଠୁ ଉପରକୁ ମୋଟା ଗାମୁଛା ଖଣ୍ଡିଏ ଦିଅନ୍ତି । ପାଚିଲା ଓଡାଟିଏ ଦି' ଚଉତା କରି ପେଟ ଉପରେ ଲମ୍ବେଇ ଦିଅନ୍ତି । ମୋଟା ଚାରିକେରିଆ ଧଳା ଫରଫର ପଇତା ବାଁ କାନ୍ଧରୁ ଡାହାଣ ପଟ ଅଣ୍ଟା ପର୍ଯ୍ୟନ୍ତ ଲମ୍ବିଥାଏ । ହସିଲେ ସାରା ଦେହଟା ଉଲୁସି ଉଠେ । କି ଦୟା ! ସତେ କି ଦୟାର ଅବତାର ! ଅନାଥିନୀ-ବାଲ୍ୟବିଧବାଙ୍କ ପ୍ରତି କି ସ୍ନେହ କି ମମତା: ଦେଖିଲେ ଆଖିରୁ ଲୁହ ବହିପଡ଼େ । ପରିଚୟ ମାଗନ୍ତି, ମଠକୁ ଯିବାକୁ ନିମନ୍ତ୍ରଣ କରନ୍ତି । ଅତି ଆଦରରେ ଗେଲ କରନ୍ତି, କୋଳରେ ବସାନ୍ତି, ଦିହ ଆଉଁଶି ଦିଅନ୍ତି । କି ନିର୍ବିକାର ପୁରୁଷ ସେ ! ପୁରୁଷ ଥିଲା, ସ୍ତ୍ରୀ ପ୍ରତି ଟିକିଏବି ସଙ୍କୋଚ ନାହିଁ । ସ୍ତ୍ରୀମାନଙ୍କର କି ଭକ୍ତି ! ମଠସାହିର ନିୟମ ସେତେବେଳେ ଭାରି କଡ଼ା । ପୁଆଣି ଘର ଦିନ ସରିବା ପରେ ରାତିରେ ନୂଆବୋହୂ ନିୟମାନୁସାରେ ମଠକୁ ଆସେ, ଠାକୁରଙ୍କୁ ଜୁହାର ହୁଏ । ଭେଟି ଦିଏ, ମହନ୍ତଙ୍କ ଘରକୁ ଯାଏ । କେମିତି ଚଳିବ, କେମିତି ସ୍ୱାମୀ ସେବା ଠାକୁର ସେବା କରିବ ସେ ବିଷୟରେ ବାବାଜି ପୂରା ତିନିଘଣ୍ଟା କାଳ ନୂଆବୋହୂଟିକୁ ଶିକ୍ଷା ଦିଅନ୍ତି । ବୋହୂର ଶଶୁର ଆଉ ଶାଶୂ ଆସି ଜଗମୋହନରେ ଧାରଣା ଦେଇଥାନ୍ତି । ମହନ୍ତଙ୍କ କବାଟ ଫିଟିଲାବେଳକୁ ରାତି ପ୍ରାୟ ଶେଷ ହୋଇ ଯାଇଥାଏ । ଗୋଟିଏ ସଫା ନୂଆ ଚାଦର ସର୍ବାଙ୍ଗରେ ଢାଙ୍କି ହେଇ ବୋହୂ ଘର ଭିତରୁ ବାହାରିଆସେ । ସେତେବେଳେ ତାକୁ କେହି ଦେଖିବେ ନାହିଁ କି ଛୁଇଁବେ ନାହିଁ । ବୋହୂ ସିଧା ସିଧା ଯାଇ ସ୍ୱାମୀ ଘରେ ପଶିବ । ଏଇଟା

ଥିଲା ନିୟମ। ସେ କାଳର ବୋହୂ ଏବେବି ଅଛନ୍ତି। ମୁଣ୍ଡବାଳ ତାଙ୍କର ଝୋଟ ହେଲାଣି। ଆଜିକାର ବୋହୂଙ୍କୁ ଏବେବି କହନ୍ତି- କେତେ ଟଙ୍କାଲୋ ମା ! ପାଞ୍ଚ କୁଡ଼ି କି ଦଶ କୁଡ଼ି ! ବାବାଜି ଖାଲି ଅଣ୍ଟାରେ କୁଢ଼େଇ ଦିଅନ୍ତି ସେତେବେଳେ। ହସି ହସି କଥା କହନ୍ତି। ଆହା-ହା କି ଦୟା ଗରିବଙ୍କ ପ୍ରତି, ପ୍ରଜାଙ୍କ ପ୍ରତି କି ଦୟା ! ତିନିଘଣ୍ଟା ଧରି କେତେ କଷ୍ଟ କରନ୍ତି ସେ, ତା' ଉପରେ ପୁଣି କେତେ ଚିଜ ସେ ନ ଦିଅନ୍ତି। ବସି ବସି ଖାଇଲେ ତିନିବରଷ ଚାଲିଯିବ। ପୁଆଣି ଦିନ ରାତିରେ ଗେରସ୍ତ ପାଖରେ ସ୍ତ୍ରୀ ନେଇ ଟଙ୍କାଗୁଡ଼ାକ ଯେତେବେଳେ ଠଣ ଠଣ କରି ଢାଳିଦିଏ ଗେରସ୍ତ ସବୁ ଭୁଲିଯାଏ। ବିଛଣାରୁ କୁଦିପଡ଼ି ସ୍ତ୍ରୀକୁ ଛାତି ଉପରକୁ ଟାଣି ନିଏ। କି କଥା ସେ - ମୋ' ଲକ୍ଷ୍ମୀ, ମୋ ସୁନା, ମୋ' ରତ୍ନ... !!!

ଆଜିର ବୋହୂ ଭୁଆସୁଣୀ ଏକଥା ଶୁଣି କବାଟ କୋଣରେ ପାଟିରେ ଲୁଗା ଗୁଞ୍ଜି ହସନ୍ତି। ଟୋକାଏ ପାଟିରେ ହାତ ଦେଇ ବାହାରକୁ ପଳାନ୍ତି।

କଥା ମଝିରେ ମୁଁ ହାଉଡ଼ୀମା'କୁ ପଚାରେ-

- ''ତୁମେତ ସେମିତି ଆସିଥିବ ପୁଆଣିଦିନ ରାତିରେ ?''

- ''ନ ଆସି ଚାରା ଅଛିରେ ପୁତ ! ମହନ୍ତ ରାଗିଯିବେ-ଠାକୁର କଞ୍ଚା ଖାଇଯିବେ।''

- ଆଚ୍ଛା, ତୁମକୁ ତ ସେମିତି ବାବାଜି ମହାରାଜ ଉପଦେଶ ଦେଇଥିବେ !

ହଁରେ ପୁତ, ସଭିଙ୍କଠାରୁ ମେତେ ସେତେବେଳେ କାହିଁକି ବାବାଜି ଭାରି ଭଲ ପାଇଥିଲେ। ଅଣ୍ଟାରେ ଅଣ୍ଟେ ଅସରପି ନେଇ ମୁଁ ଘରକୁ ଯାଇଥିଲି। ଗାଁରେ ସମସ୍ତେ ଶୁଣି ବାହାବା କଲେ। କହିଲେ- ବୋହୂଟି ଲକ୍ଷ୍ମୀ-ଭାରି ଭଗତି ଅଛି। ମୁଁ ତାକୁ ଆହୁରି ଉତ୍ସାହରେ ପଚାରିଲି, ତୁମର ସେ ଉପଦେଶରୁ କିଛି ମନେ ଅଛି ହାଉଡ଼ୀମା ! ଗୋଟେ କିଛି କହିଲ।

ଏତେ ଲମ୍ବର ଜିଭ କାଢ଼ି, ତିନିଥର ତାଳୁରେ ଯୋଡ଼ ହସ୍ତ ମାରି ଦଶଥର ରାମନାମ ଧରି ହାଉଡ଼ୀମା କହେ, ନାଇଁରେ ବାପ, ସେ କଥା କହିବାର ନୁହେଁ। ବଡ଼ ଦୋଷ ହେବ। ମହନ୍ତ ସରଗରେ ଥାଇ ରାଗିବେ। ଏଇ ଆକାଶରେ କାଳେ ସିଏ ଗୋଟାଏ ତାରା ହେଇ ରହିଛନ୍ତି। ସବୁବେଳେ ଜଗିଛନ୍ତି। କାହାରି ପାଖରେ କହିଲାମାତ୍ରକେ ତଣ୍ଟି ଚିପି ଧରିବେ ଅଦୁରୁଶ ଭାବରେ।

ମୁଁ ଚୁପ୍ ହୋଇଯାଏଁ। ନାଳକୂଳ ମଠର ସେ ଇତିହାସ ଆଉ ତାଙ୍କର ଅଶରୀରୀ ଆତ୍ମାର ଏତାଦୃଶ ଶକ୍ତି କଥା ଶୁଣି ମୋର ଅନ୍ତରାତ୍ମା ଥରିଉଠେ। ହାଉଡ଼ୀମା'କୁ ମୁଁ ବିଶ୍ୱାସ କରେଁ। ତା' କଥାକୁ ସମ୍ମାନ ଦିଏଁ। ମହନ୍ତଙ୍କର ସ୍ୱର୍ଗତ ଆତ୍ମାର ଉଦ୍ଦେଶ୍ୟରେ ପ୍ରଣତି ବାଢ଼େ ଆଉ ଥରେ ଥରେ ଦୃଷ୍ଟି ପକାଏ ମନ୍ଦିରରେ ଥିବା ରାଧାକୃଷ୍ଣଙ୍କ ଯୁଗଳମୂର୍ତ୍ତି ଉପରେ। ଯୁଗଳମୂର୍ତ୍ତି ହସିଉଠୁଥାନ୍ତି ପୁଷ୍ପର ସମ୍ଭାରରେ। ମନ୍ଦିରରୁ ବାୟୁ

ହିଲ୍ଲୋଳରେ ଭାସି ଆସୁଥାଏ ସଜ ଧୂପର ଅଦେଖା ସରୁ ରେଖା ଛାୟାପଥର ଶ୍ରୀ ନେଇ । ସେ ହସ କ'ଣ ବିଦ୍ରୂପର ! ସେ ଧୂପରେଖା କ'ଣ ତିମିରାଛନ୍ନ ଇତିହାସର କୁହେଳିକା !

ହାଉଡ଼ୀମା ପୁଣି ଆରମ୍ଭ କଲେ, ସହିଲା ନାହିଁ ବାପ, ଧର୍ମ ସହିଲା ନାହିଁ । ତାଙ୍କପରି ଲୋକଙ୍କୁ ପୁଣି କଳଙ୍କ ଲାଗିଲା । ଦିନେ ରାତି ଅଧରେ ଠାକୁରେ ତାଙ୍କୁ ସପନେଇଲେ - ତୁ' ପାପୀ, ତୁ' ଅଧର୍ମୀ । କାଲି ସଞ୍ଜ ପୂର୍ବରୁ ମୁଁ ତୋ'ର ତଣ୍ଟି ଚିପିଦେବି । ଯା ଶୀଘ୍ର ଯା-ସଦାବର୍ତ୍ତ ମଠର ମହନ୍ତକୁ କହିବୁ ସେ ଏ ମଠର ଭାର ନେଉ । ସତକୁ ସତ ବାପ ତା' ପରଦିନ ସକାଳୁ ମୋତେ ଯେମିତି ଏତିକି କଥା କହିଛନ୍ତି ତାଙ୍କର ପାଟି ବନ୍ଦ ହେଇଗଲା । ଖାଲିତ ଗଡ଼ିଲେ ।...

''ସତରେ ହାଉଡ଼ୀମା ସେ କ'ଣ ପାପ କାମ କରିଥିଲେ ?'' ମୁଁ ମଝିରେ ପଚାରିଲି ।

କିଜାଣି ବାପା, ଦିନ ରାତି ଯିଏ କରୁଛି ତାକୁଇ ଜଣା । ଆମେ କ'ଣ କହିବୁ । ପାପ ନ କରିଥିଲେ କଣ ଏପରି ଦଣ୍ଡ ହେଇଥାନ୍ତା । ମହନ୍ତ ଖାଲିତ ଗଡ଼ିଲେ ଦିନଟାସାରା । କେହି ଆଉ ଭଲ କରିପାରିଲେ ନାହିଁ । ଠିକ୍ ସଞ୍ଜ ବେଳକୁ ପ୍ରାଣ ଛାଡ଼ିଗଲା । ସେଦିନ କ'ଣ ଦେଖିବୁ ବାପ, ସାହିଟା ସାରା କାନ୍ଦବୋବାଳି । ଯିଏ ଶୁଣିଲା ସିଏ କାନ୍ଦିଲା । କାହ୍ନୁଚରଣ ମହନ୍ତ ମଠ ସମ୍ଭାଳିଲେ । ସିଏବି ସେମିତି ଭାରି ଦୟାଳୁ, ଭାରି ପଣ୍ଡିତ । ହେଲେ ବାପା ଗାଁ ବାଲା କ'ଣ କରେଇଦେଲେ ? ସବୁବେଳେ ଲଗେଇଲେ, ସବୁବେଳେ ଖୁଞ୍ଚା ପେଲିଲେ । ଶେଷକୁ ହେଲା କ'ଣ ? ନିଆଁସିଆ ପାଇଲେ କ'ଣ ? ଏଣ୍ଡାମେଣ୍ଟ୍ ମଠ ନେଲା ଯେ, ବର୍ଷକୁ ଦି'ଖଣ୍ଡ ଲୁଗା ମିଳୁଥିଲା ସେତକ ବି ବନ୍ଦ କରିଦେଲା ।

ହାଉଡ଼ୀମାର କଥା ସେଦିନ ମୋର କିଶୋର ହୃଦୟରେ କୌତୂହଳର ଲହଡ଼ି ତୋଳିଥିଲା । ରାତିଟା ସାରା ମୁଁ ଭାବିବାକୁ ଲାଗିଲି । କ'ଣ ହେଇପାରେ ? କ'ଣ ହେଇପାରେ ସେ ଉପଦେଶ । ଯାହାକୁ ପ୍ରକାଶ କରିଦେଲେ ମହନ୍ତ ମହାରାଜଙ୍କର ସ୍ୱର୍ଗତ ଆତ୍ମା ଅସନ୍ତୁଷ୍ଟ ହେବେ । ତଣ୍ଟି ଚିପି ରକ୍ତ ପିଇଯିବେ । ଉପଦେଶ ଦେଇ ପୁଣି ଟଙ୍କା ଦିଅନ୍ତି ଅଣ୍ଟେ ଅଣ୍ଟେ । କାହିଁକି । କି ଉପଦେଶ । ନାଳକୂଳ ମଠର ପବିତ୍ର ବାତାବରଣ ସେ ଦିନର ମୋର କିଶୋର ହୃଦୟକୁ ଛୁଇଁ ପାରୁ ନ ଥିଲା । ଗୋଟିଏ କୌତୁକର ମରୀଚିକା ପଛରେ ମୁଁ ଧାଉଁଥିଲି । ଯେଉଁଠି କିଛି ନାହିଁ କେବଳ କଳ୍ପନା-କେବଳ ଆଶା ଓ ଆକାଂକ୍ଷାର ପ୍ରତିମୂର୍ତ୍ତି ।

ହଠାତ୍ ମୁଁ ଚମକି ପଡ଼ିଲି । ଧଡ଼ାସ୍ କରି ମୋ ଘରର କବାଟଟା ଖୋଲିଗଲା । ରାତି ସେତେବେଳକୁ କେତେ ହେବ ଜାଣି ନାହିଁ । କିନ୍ତୁ ରାତ୍ରିର ଭୟାବହତାରେ ମୁଁ

ଆବଦ୍ଧ ନ ଥିଲି । ଆଖି ଆଗରେ ମୋର ଇନ୍ଦ୍ରର ମହଲ ସହସ୍ର ଦୀପାଳିରେ ଝଲମଲ ଉଠୁଥିଲା । ସୁସଜ୍ଜିତ କକ୍ଷରେ ଶୁଭ୍ର ବସ୍ତ୍ର ପରିବେଷ୍ଟିତ ହସ୍ତୀଦନ୍ତର ପଲଙ୍କ । ପଲଙ୍କ ଉପରେ ଶୁକ୍ଳ ବସ୍ତ୍ରଧାରୀ ମୁଣ୍ଡିତ ତପସ୍ୱୀ ? ନା ତପସ୍ୱୀ ନୁହେଁ । ଦେହରେ ତାଙ୍କର ବାସନାର ଭସ୍ମ । ଆଖିରେ କ୍ଷୁଧାର ସଙ୍କେତ । ଜିହ୍ୱାରେ ସ୍ୱାଦୁ ଆସ୍ୱାଦନର ଲାଳସା । କିଏ ତେବେ ସେ ? ମଠର ମହନ୍ତ ? ଅନନ୍ତ ଦାସ ? ହେଇପାରନ୍ତି । ହାଉଡ଼ୀମାର ବର୍ଣ୍ଣିତ ଚେହେରା ମିଳିଯାଉଛି । କିନ୍ତୁ ସେ ଯେ ପ୍ରତୀକ୍ଷା କରୁଛନ୍ତି ! କାହାକୁ ? ପବିତ୍ର ହୃଦୟରେ ଈଶ୍ୱର ପ୍ରେମ ନେଇ ସେ ନିଶା ରାତିର ଭୟାବହତାକୁ ଉପେକ୍ଷା କରି କାହାର ପ୍ରତୀକ୍ଷାରେ ବସିଛନ୍ତି ? ଚକ୍ଷୁରେ ନିଦ୍ରାର ସଙ୍କେତ ନାହିଁ...

କବାଟ ଧୀରେ ଧୀରେ ଖୋଲିଲା । ମହନ୍ତଙ୍କର ଦୃଷ୍ଟି ଚଞ୍ଚଳ ହୋଇଉଠିଲା । ସେ ପଲଙ୍କରୁ ଓହ୍ଲାଇ ପଡ଼ିଲେ । ପାଦେ ପାଦେ କରି ଆଗେଇଯାଇ କବାଟଟା ଖୋଲି ଧରିଲେ । ବାହାରେ ମସୀ ଅନ୍ଧକାରର ରାଜତ୍ୱ । ଭିତରକୁ ପଶିଆସିଲେ ଜଣେ ଅବଗୁଣ୍ଠନବତୀ । ମହନ୍ତ କବାଟ ଲଗାଇଦେଲେ । ଆଗନ୍ତୁକା ସାମାନ୍ୟ ତ୍ରସ୍ତ ହେଇ ପଛକୁ ଫେରି ଚାହିଁଲେ । ନିଜର ଅବଗୁଣ୍ଠନ ତଳୁ ସାମାନ୍ୟ ଚାହିଁଲେ ମହନ୍ତଙ୍କୁ, ତା'ପରେ ତାଙ୍କର ପାଦଛୁଇଁ ପ୍ରଣାମ କଲେ । ମହନ୍ତ କିଛି କହିଲେ; କିନ୍ତୁ ଦୃଶ୍ୟ ବ୍ୟତୀତ ସ୍ୱରର ସାମାନ୍ୟ ଆଭାସ ବି ପାଉ ନ ଥାଏ । ମହନ୍ତ ତା' ପରେ ଆଗନ୍ତୁକାର ଅବଗୁଣ୍ଠନ ଖୋଲିଦେଲେ । ଗୋଟିଏ ପଲ୍ଲୀବଧୂର ସରଳ ଶାନ୍ତ ମୁହଁଟିଏ ମୁଁ ସ୍ପଷ୍ଟ ଦେଖିଲି । ଅଳ୍ପ ଚିହ୍ନା ଚିହ୍ନା ଜଣା ପଡୁଥାଏ, କିନ୍ତୁ କାହାର ? ନାଁ ମନେପଡ଼ିଲା ନାହିଁ । ବୋହୂଟି ଅବଗୁଣ୍ଠନ ଟାଣି ଦେବାକୁ ଚେଷ୍ଟା କଲା । କିନ୍ତୁ ମହନ୍ତ ତାହା କରେଇ ଦେଲେ ନାହିଁ । ଧୀରେ ଧୀରେ ତା'ର ହାତ ଧରି ଟାଣିଲେ । ବୋହୂଟିର କାନ ପାଖରେ ଫିସ୍ ଫିସ୍ କରି କିଛି କହିଲେ । କିନ୍ତୁ ବୋହୂଟି ଯିବାକୁ ନାରାଜ । ସମସ୍ତ ଦେହରେ ତା'ର ଭୟର ତ୍ରସ୍ତତା-ଆକୁଳତା- କ୍ଷମା ଭିକ୍ଷାର ଆକୃତି...

କିନ୍ତୁ ସମସ୍ତ ନିଷ୍ଫଳ ହେଲା । ମହନ୍ତ ଗୋଟିଏ ସ୍ୱର୍ଣ୍ଣ ମୁଦ୍ରିକା-ଗୋଟିଏ ସୁବର୍ଣ୍ଣର ମାଳା ବୋହୂଟିକୁ ଉପହାର ଦେଲେ । ଝଣଝଣ କରି ଥଳିରୁ ରୁପାଟଙ୍କା ଥଳିଏ ଢାଳିଦେଲେ ତା'ର ଅଣ୍ଟିରେ । ବୋହୂଟି ଚୁପ୍ ହୋଇଗଲା ବୋଧହୁଏ । ଆଖିରେ ତା'ର କୌତୁକ, କୃତଜ୍ଞତାର ଆଭାସ... ।

ମହନ୍ତ ବୋହୂଟିର ଉତ୍ତରୀଟିକୁ କାଢ଼ିଦେଲେ । ଧୀରେ ଧୀରେ ଶରୀରରୁ ଆବରଣଟିକୁ କାଢ଼ି ପକାଇଲେ । ଆଖି ଆଗରେ ତାଙ୍କର ନବାଗତ ଯୁବତୀ ପଲ୍ଲୀବଧୂର ପେଲବ ଶୁଭ୍ର ଅଙ୍ଗଶୋଭା । ମହନ୍ତ ମହାଶୟଙ୍କ ଆଖିରେ କ୍ଷୁଧାର ଲେଲିହାନ ଶିଖା । ସେ ବିଳମ୍ୱ କଲେ ନାହିଁ । ବୋହୂଟିକୁ ଟେକିନେଲେ ନିଜର ବଳିଷ୍ଠ ବାହୁ ବନ୍ଧନରେ ପଲଙ୍କ ଉପରକୁ । ତା ପରେ ସେହି କ୍ଷୁଧାର ମେଣ୍ଟନ । ଯୁବତୀଟି ମୂର୍ଚ୍ଛିତା ଭଳି ପଡ଼ିରହିଥାଏ ।

ଠିକ୍ ସେହି ସମୟରେ ଗୋଟିଏ ଧଳା ପରଦା ପଡ଼ିଗଲା ମୋର ଆଖି ଆଗରେ । ମୁଁ ଚିତ୍କାର କରି ଉଠିଲି, 'ହାଉଡ଼ୀମା ହାଉଡ଼ୀମା, ପାଇଛି ପାଇଛି...''

ମୋତେ ହଲେଇ ଦେଇ ଜଣେ କିଏ ଡାକିଲା । ମୁଁ ଆଖି ଖୋଲି ଚାହିଁଲି ନ' ବର୍ଷର ଗୋଲ ଡଉଲ ପୁଅଟିଏ ନାରଣା- ପୂଝାରୀଙ୍କ ପୁଅ ନାରଣା । ହାତରେ ଚତୁର୍ଥ ଶ୍ରେଣୀର ଅଙ୍କ ବହି ଖଣ୍ଡିଏ ଆଉ ସ୍ଲେଟଟିଏ । ମୋତେ ସେ ପୁଣି ଥରେ ହଲେଇ ଦେଇ କହିଲା, 'ଦେଖିଲଣି ଦିନ କେତେ ହେଲାଣି, 'ମୋତେ ପରା ଅଙ୍କ କହିଦେବ, କଲେଜ ଯିବାବେଳ ହୋଇଗଲାଣି ଯେ - ଉଠ ।'' ବାହାରେ ଠାକୁରଙ୍କର ଆରତି ଘଣ୍ଟା ବାଜି ଉଠିଲା । ସଜ ଧୂପର ଗନ୍ଧ ମୋର ନାସାରନ୍ଧ୍ରରେ ସୃଷ୍ଟି କଲା ଏକ ଅପୂର୍ବ ଶିହରଣ । ମୋର ଅନ୍ତଶ୍ଚକ୍ଷୁରେ ଭାସିଉଠିଲା ନାଳକୂଳ ମଠର ପୂର୍ବ ଇତିହାସ-ମହନ୍ତ ମହାରାଜଙ୍କର ଉପଦେଶ- ଆଉ ପଲ୍ଲୀବଧୂର ସରଳ ଲୁବ୍ଧ ହୃଦୟ । ସେ ଦିନର ମଠ ଆଉ ଏ ଦିନର ମଠ- ଢେର ଫରକ୍ । ଏବର ଠାକୁର ମଣିଷ କଞ୍ଚା ଖାଉ ନାହାନ୍ତି । ପଲ୍ଲୀବଧୂ ପୁଆଣି ରାତିରେ ଉପଦେଶ ନେଉ ନାହାନ୍ତି । ଟଙ୍କାଥଳି ଉପହାର ଦିଆଯାଉ ନାହିଁ । କିନ୍ତୁ ଏବର ଠାକୁର ଅତି ସୁନ୍ଦର-ଅତି ମନୋହର । ସେଦିନ ସନ୍ଧ୍ୟାରେ ଯୁଗଳମୂର୍ତ୍ତିଙ୍କର ମଧୁର ହାସ୍ୟରେଖା ମୋର ହୃଦୟରେ ସ୍ୱର୍ଗୀୟ ପ୍ରେମର କମ୍ପନ ସୃଷ୍ଟି କଲା, ମୁଁ ଉଠିପଡ଼ି ପ୍ରଣତି ଜଣାଇଲି । ତା'ପରେ ଗାଇଉଠିଲି ''ବ୍ରହ୍ମା ମୁରାରି ତ୍ରିପୁରାନ୍ତକାରୀ...''

ନାଳକୂଳ ମଠର ସ୍ମୃତି ସଙ୍ଗେ ସଙ୍ଗେ ନାରଣାର ସ୍ମୃତି ମଧ୍ୟ ମୋ ହୃଦୟରେ ରହିଥିବ ଚିରଦିନ । କି ସୁନ୍ଦର ତା'ର କଥା ! କି ସୁନ୍ଦର ତା'ର ରୂପର ମାଧୁରିମା ! ମୁଁ ବେଳେ ବେଳେ ଚାହିଁରହେ ଅନେକ ସମୟ ଧରି, ଦେଖେ ତା'ର ଅନ୍ତରର ସୁପ୍ତ ପ୍ରକୃତି । ଶ୍ରୀକୃଷ୍ଣଙ୍କର ବାଲ୍ୟ ମୂର୍ତ୍ତିର ସ୍ମରଣ ମୋର ହୃଦୟରେ ଉଙ୍କିମାରେ । ମୁଁ ତାକୁ ପଚାରେ, ନାରଣା ତୁ ବଡ଼ହେବୁ ? ଅତି ସୁନ୍ଦର ଭଙ୍ଗୀରେ ଡଗରା ଡଗରା ଆଖିର କଳା କଳା ପତା ଯୋଡ଼ିକୁ ନଚାଇ ନଚାଇ ଲୋମଶ ଭ୍ରୂଲତାକୁ ଉପରକୁ ଟେକି ସେ କହେ, - ହଁ-କାହିଁକି ନ ହେବି ? ମନ ମୋର ଆନନ୍ଦରେ ପୂରିଉଠେ । ଭାରତର ସେକାଳର ଋଷିପୁତ୍ରଙ୍କ କଥା ମୋର ସ୍ମରଣ ହୁଏ । ମୁଁ ପୁଣି ତାକୁ ବିବେକାନନ୍ଦଙ୍କର ଫଟୋ ଦେଖାଇ କହେ, ଏଙ୍କୁ ଚିହ୍ନିଛୁ ନାରଣା ? ପୂର୍ବଭଙ୍ଗୀରେ ହସ ହସ ହୋଇ ସେ କହେ, ଆରେ ଏଙ୍କୁ ମୁଁ ଚିହ୍ନିନି ? ଏଙ୍କ କଥାପରା ଆମ ସାହିତ୍ୟ ବହିରେ ଅଛି । ସେ ସ୍ୱାମୀ ବିବେକାନନ୍ଦ, ପିଲା ବେଳେ ଭାରି ଚଗଲା ଥିଲେ, କାହାରି କଥା ମାନନ୍ତି ନାହିଁ, ଝୁଙ୍କ କାଢ଼ନ୍ତି, ମା' ପାଖରେ ଅଳି କରନ୍ତି । ମା' ତାଙ୍କୁ ସମ୍ଭାଳି ନ ପାରି ମୁଣ୍ଡରେ ତାଙ୍କର 'ଶିବ-ଶିବ' କହି ପାଣି ଢାଳିଲେ ଯାଇ ତାଙ୍କର ଝୁଙ୍କ ଭାଙ୍ଗେ । ସେ ପୁଣି ଭଲପିଲା ହେଇ ବସନ୍ତି, ବିବେକାନନ୍ଦ ବଡ଼ହେଇ ବାବାଜି ହେଲେ । କେତେବଡ଼ ପଣ୍ଡିତ ହେଲେ । ଆମେରିକାରେ ଆମ ହିନ୍ଦୁ ଧର୍ମ ବିଷୟରେ ବକ୍ତୃତା ଦେଇ ସେ ଭାରତର ନାଁ ରଖିଲେ ।

ମୁଁ ମୁଗ୍ଧ ଚକ୍ଷୁରେ ଚାହିଁଥାଏଁ ତା' ଆଡ଼କୁ । କଥା ଶେଷରେ ପଚାରେଁ, ନାରଣା, ତୁ ଏତେ ଚଗଲା ହେଉଛୁ ଯେ ତୋ ବାପା ତତେ ପଢ଼େଇବେ ନାହିଁ ବୋଲି କହୁଛନ୍ତି । ସାଙ୍ଗେ ସାଙ୍ଗେ ସେ ଉତ୍ତର କରେ, ପଣ୍ଡିତ ଗୋଦାବରୀଶ ପୁଣି କେମିତି ପଢ଼ୁଥିଲେ ? ସେ'ତ ଭାରି ଗରିବ ଥିଲେ !

ମୁଁ ତାକୁ ଚାହିଁ ଦେଖେଁ ସତେ ଯେପରି ଏ କଥା ତା'ର ଅନ୍ତରର ଗଭୀରତମ ପ୍ରଦେଶରୁ ବାହାରି ଆସୁଛି - ଏକ ନିମ୍ନାଭିମୁଖୀ ପୟଃସ୍ୱିନୀପରି ଅନ୍ତରର ଶୁଦ୍ଧ ପବିତ୍ର ଭାବନାରାଶି । ଗଭୀର ଉତ୍ସାହରେ କଳ-ଉଚ୍ଛଳ ହେଇ ବହିଆସୁଛି । ସେ ଅଦମ୍ୟ-ସେ ଦୃଢ଼ପ୍ରତିଜ୍ଞ ।

ବେଳେ ବେଳେ ମୁଁ ଦେଖେଁ ମୋ ପଢ଼ା ଟେବୁଲ ଉପରେ କଲମ ନ ଥାଏ, ବହି ନ ଥାଏ, ଥାଏ ଗୋଟାଏ ଅଙ୍କବହି ଆଉ ସ୍ଲେଟ ପେନ୍‌ସିଲ । କାଲେଣ୍ଡର୍‌ରେ ଆଗମାସର କାଗଜ ଚିରା ସରିଥାଏ । କଇଁଚି, ଲଣ୍ଠନ, କାଳିଦୁଆତ ସବୁବେଳେ ଉଭେଇ ଯାଇଥାନ୍ତି । ମୁଁ ଭୀଷଣ ଭାବରେ ରାଗିଯାଏଁ, ପୂଝାରୀଙ୍କୁ କହେଁ - ନନା, ତୁମ ନାରଣାକୁ ମୁଁ ଖୁବ୍ ମାରିବି, ଏମିତି ମାରିବି ଯେ ଆଉ ଦିନେ ବି ସେ ମୋପାଖକୁ ଯିବ ନାହିଁ, ଏସବୁ କି ଫାଜିଲାମି ! କାଲେଣ୍ଡରକୁ ଫାଡ଼ି କଣ୍ଟାକୁ ସବୁ କେଉଁଠି ଫୋପାଡ଼ିବ, ବୁଟ୍ ପାଲିସ ଡବାରଙ୍ଗ କାଢ଼ି ଜୋତାରେ ମାଖିବ । ବ୍ରସରୁ ସବୁ ରୋମଗୁଡ଼ିକ ଓପାଡ଼ିବ... ଓଃ କି ବଦମାସ୍ ପିଲା ସେ ?

ନନା ଦୁଃଖିତ ହୁଅନ୍ତି । ନିଜର ପୁଅପାଇଁ ଗୋଟାଏ ଅନ୍ୟ ପିଲାପାଖରୁ ଏକଥା ଶୁଣି ସେ ଯେପରି ଅପମାନ ଆଉ ଆତ୍ମ-ଧିକ୍କାରରେ ଅଣନିଃଶ୍ୱାସୀ ହୋଇପଡ଼ନ୍ତି । କହନ୍ତି, ''କ'ଣ କରିବି କହିଲ ଅନନ୍ତ'' ପିଲାଟାକୁ କ'ଣ ମୁଁ କମ୍ ମାରୁଛି ? ତା'ର ଏଇ ଚଗଲାମି ପାଇଁ, ମିଛକଥା ପାଇଁ ପିଟି ପିଟି ଛାଲ ଉତାରି ଦେଉଛି, ତଥାପି ଯେଉଁ କଥାକୁ ସେଇ କଥା । ଏଇ, ଡାକ୍ତରଖାନାକୁ ଗଲାଣି ଦୁଇଘଣ୍ଟା ହେଲା, ଏପର୍ଯ୍ୟନ୍ତ ଫେରି ନାହିଁ । କେଉଁଠି ସ୍ଲେଟ ହଜାଇ ଦେଇ ପିଲାଙ୍କ ସଙ୍ଗରେ ଖେଳୁଛି କି କ'ଣ ! ଆସୁ ଆଜି ତା' ଖେଳ ଛଡ଼େଇ ଦେଉଛି । ଶୁକନନା ମୁହଁ ତଳକୁ ପୋତି ଚାଲିଯାନ୍ତି । ମୁଁ ପୁଣି କହେଁ, 'ପିଲାଟାକୁ ଶାସନ କର ନନା, ବଡ଼ ଖରାପ ହେଉଛି ।''

ମୁଁ କଲେଜରୁ ଫେରି ଦେଖେଁ ନାରଣା ବସିଛି ଜଗମୋହନରେ । ହସ ହସ ମୁହଁଟା ତା'ର ମଉଳି ପଡ଼ିଛି । ଯେପରି କ'ଣ ଗୋଟାଏ ପଢୁଛି । ମୋ ଉପରେ ଦୃଷ୍ଟି ପଡ଼ିଲା ମାତ୍ରେ ସ୍ୱଭାବ ସୁନ୍ଦର ହସ ହସି ଦଉଡ଼ି ଆସିଲା । ଘର ଭିତରକୁ ପଶିଯାଇ କହିଲା, ଆଜି ଏତେ ଡେରି ହେଲା କାହିଁକି ? ତିନିଟାରୁ ତ ବେଶି ହୋଇଗଲାଣି । ମୁଁ ତାକୁ କଥା କହେନା, ସେ ପୁଣି ହସି ହସି କହେ, ତୁମର ଗୋଟାଏ ଜିନିଷ ହଜିଛି ମୁଁ ଜାଣେ, କହିବି ନାହିଁ କହିବି ନାହିଁ ଦି'ଟା ଜିନିଷ, ତିନିଟା ଜିନିଷ...

ଦେବି ଯେ ଚାପୁଡ଼େ, ଫାଜିଲାମି ବାହାରି ଯିବ । ମୁଁ ତାକୁ ଧରିବାକୁ ଗଲାବେଳେ କିରି କିରି ହସି ଛୁଟି ପଳାଏ ବାହାରକୁ । ଯାଇ ଦେଖାଏ ମୋର ଫାଉଣ୍ଟେନ୍ କଲମ, ହସି ହସି କହେ, ଦେଖ ହେଇ କ'ଣ ଆଣିଛି । ମୁଁ ବିରକ୍ତ ହୋଇ ଡାକେଁ, ନନା - ନନା ! ହେଇ ଦେଖ ଦେଖ ନାରଣାକୁ ।

ନାରଣା ଭଲପିଲା ପରି ପୁଣି ଚାଲିଆସେ । କଲମଟା ଫେରେଇ ଦେଇ କହେ, ମୁଁ ଆଉ ତୁମକୁ କଥା କହିବି ନାହିଁ ।

ନ କହିଲେ ମୁଁ ତୋତେ ଖୋସାମଦ୍ କରୁ ନାହିଁ କଥା କହିବାକୁ । ମୁଁ ରାଗରେ କହେ । ସେ କିନ୍ତୁ ପୁଣି କହେ, ବିବେକାନନ୍ଦ ପିଲାବେଳେ ଖୁବ୍ ଚଗଲା ଥିଲେ ?

ମୁଁ ହସିପକାଏଁ । କହେ, ବାଃ ସେଥିପାଇଁ ତାହେଲେ ତୁ ଚଗଲା ହେଉଛୁ । ରହ ରହ ମୁଣ୍ଡ ଉପରେ ପାଣି ଢାଳିଦିଏ । ତା' ହାତଟା ଧରି ପକେଇଲା ବେଳକୁ ସେ କହେ, ଆ-ହା ଛାଡ଼-ଛାଡ଼, କାଟିଲା ।

ଏ ତୋ ହାତରେ କ'ଣ ହେଇଛି କିରେ ।

ଦେଖିଲ, ଅତି କରୁଣ ଦୃଷ୍ଟିରେ ସେ ମୋତେ ଚାହେଁ ।

ମୁଁ ଦେଖେ କାନ୍ଧଠାରୁ କହୁଣି ପର୍ଯ୍ୟନ୍ତ ଗୋଟାଏ ଦାଗ ଯାଇଛି । ଫୁଲିଯାଇ ଲାଲ ଦେଖାଯାଉଛି । ମୁଁ ଜାଣିପାରେ ଆଜି ନନା ତାକୁ ମାରିଛନ୍ତି । କିନ୍ତୁ ପୁଣି ପଚାରେ, କିରେ - କହୁନୁ ଏ କ'ଣ ? ସେ ଆଉ କିଛି କହେନା । ତଳକୁ ଚାହେଁ । ବୁଢ଼ା ଆଙ୍ଗୁଳିରେ ତଳେ ଗାର କାଟେ । ଆଖିରୁ ତାର ଲୁହ ଦି'ଟୋପା ବହିଆସେ । ମୁଁ ତାକୁ କହେ, ତୁ ଏମିତି ଚଗଲା ହେଉଛୁ ମାଡ଼ ଖାଇବୁ ନାହିଁ ? ବଡ଼ ଦୁଃଖିତ ହେଲା ପରି ସେ କହେ - ନା, ମୁଁ ଆଉ ଚଗଲା ହେବି ନାହିଁ ।

ମୁଁ ତା' ହାତ ଛାଡ଼ିଦିଏ, କହେ ଯା, ପଢ଼ିବୁ ଯା -

ସେ ଧୀରେ ଧୀରେ ଘରୁ ଗୋଡ଼ କାଢ଼େ ।

ସେଦିନ ଆସିଥିଲେ ନେପାଳବାବୁ । ଏଣ୍ଡାଓମେଣ୍ଟ ଇନ୍‌ସପେକ୍ଟର ନେପାଳ ପଣ୍ଡା । ମଫସଲକୁ ଜମିଦାର ଗସ୍ତରେ ଗଲେ ପ୍ରଜାମାନେ ଯେପରି ଭୟ ଆଉ ଭକ୍ତିରେ ଝାଳନାଳ ହେଇ ତାଙ୍କ ପଛେ ପଛେ ଗୋଡ଼ାନ୍ତି ସେହିପରି ସାରା ମଠଟାଯାକ ଯେପରି ତାଙ୍କ ପଛେ ପଛେ ଗୋଡ଼ଉଥାଏ । ସେ ବାଡ଼ିକୁ ପୋଖରୀପାଣି ସାରିବାକୁ ଗଲେ ସ୍ଥାନ ନିର୍ଣ୍ଣୟ କରିବାକୁ ସାଙ୍ଗରେ ଯାଏ ଟହଲିଆ । ଏଣେ ଦାନ୍ତ ଘଷିବା ପାଇଁ, ଗାଧୋଇବା ପାଇଁ ପାଣି କାଢ଼ି ରଖେ ଟହଲିଆଣୀ ହାଉଡ଼ୀମା । ନନା ବେଳ ଦି'ଘଡ଼ିଠାରୁ ଠାକୁର ସେବା ସାରି ରୋଷେଇ ବସେଇ ଦେଇ ସାରିଥାନ୍ତି । ବାବୁ ଖାଲି ସବୁବେଳେ କଥା ପଚାରିବାରେ ଲାଗିଥାନ୍ତି । ମଠଟାର ହେପାଜତ କେହି ଭଲଭାବରେ ନେଇପାରିଲେ ନାହିଁ । ତେଣୁ କମିସନର ସାହେବ ମୋତେ ଏଠିକି ପଠେଇଲେ ।

ଆଗରୁ ହରିଡ଼ାଖଣ୍ଡି ମଠରେ ଥିଲି ଯେ କୋଟି କୋଟି ଟଙ୍କାର ସମ୍ପତ୍ତି ସମ୍ଭାଳି ଥିଲି । ସତେଇଶଜଣ ଛାତ୍ରଙ୍କୁ ଖାଇବାକୁ ଦେଉଥିଲି । ହିସାବପତ୍ର ଟିକିଏବି ଆଡ଼ବାଙ୍କ ହେବ ନାହିଁ । ସବୁବେଳେ ମୋର ଧନ୍ୟ - ଧନ୍ୟ ପଡ଼ିଗଲା । ସାହେବ ତ ଭାରି ଖୁସି । ଦରମା ମୋର ବଢ଼େଇ ଦେଲେ ପଚାଶଟଙ୍କା । ବି.ଏ. ପାସ କରିଥିଲି । ସବ୍‌ଡେପୁଟି ପାଇଁ ଦଶ ଜାଗାରୁ ଖବର ଆସିଥିଲା । କିନ୍ତୁ ମୁଁ କହିଲି, ନାଃ ଏଗୁଡ଼ା ସବୁ ଭଲ ନୁହେଁ । ପରମାନନ୍ଦଙ୍କ ଚରଣାରବିନ୍ଦରେ ମନ ଧ୍ୟାନ ସବୁ ଅର୍ପଣ କରିବା ବ୍ରାହ୍ମଣଙ୍କ ପକ୍ଷରେ ଉତ୍ତମ । ତେଣୁ ଏଇ ଚାକିରିଟାକୁ ଧରିଲି । ଘରେ ଆମର ରଜାଘରର ସମ୍ପତ୍ତି । ବସି ଖାଇଲେ ଦଶଜଣଲୋକ ବର୍ଷରେ ସୁରୁଖୁରୁରେ ଚଳିବେ । ଘରେ ମୋତେ ସବୁ ମନା କରୁଥିଲେ ଚାକିରି କରିବା ପାଇଁ । କିନ୍ତୁ ଠାକୁରଙ୍କ ମେଳା କ'ଣ କେହି ଛାଡ଼େ ? ତାଙ୍କ ଡାକରା କ'ଣ କେହି ଏଡ଼େଇ ଦେଇପାରେ ? ମୋତେ ପରା ଠାକୁର ସ୍ୱପ୍ନରେ ଡାକିଲେ ! ସବୁକାମ ଛାଡ଼ି ମୁଁ ଏ କାମ ଧରିଛି । ବାବା ଠାକୁରଙ୍କ ଧନ । ଗୋଟିଏ ଅଧଲା ଖାଇଲେ କୋଟିଏ ଟଙ୍କାର ସମ୍ପତ୍ତି ଯିବ ।

ଏଇମିତି କେତେ କ'ଣ କଥା କହିଲାବେଳେ ଶୁଣିବା ଲୋକଙ୍କର ଆଖିରୁ ପାଣି ବହିପଡ଼େ । ଆହା କି ଭକ୍ତି ବାବୁଙ୍କର ! ସେମିତି ନ ହେଇଥିଲେ ସେ କ'ଣ ଏଣ୍ଡାମେଣ୍ଟ୍ ମାଲିକ ହେଇପାରିଥାନ୍ତେ ? ବାବୁ ଖାଇପିଇ ସୁସ୍ଥ ହେଲା ପରେ ମୋତେ ଡାକିଲେ ଚପରାସୀ ହାତରେ । ମୁଁ ଗଲି । ଖଣ୍ଡେ ଦୂରରୁ ଓଳଗି ହେଲି । ବାବୁ ମୋତେ ଆଡ଼ ଆଖିରେ ଟିକିଏ ଚାହିଁଲେ, ତା'ପରେ କହିଲେ, 'ତୋ ନାଁ ଅନନ୍ତ ଶୁକ୍ଳ ?' ମୁଁ କହିଲି, ଆଜ୍ଞା - ହଁ ।

ତୁ କ'ଣ ଗୋଟିଏ ଗରିବ ପିଲା ? ବାବୁ ପୁଣି ପଚାରିଲେ । ମୁଁ ସେଇମିତି ଯୋଡ଼ହସ୍ତ ହେଇ ଉତ୍ତର ଦେଲି, ହଁ ଆଜ୍ଞା, ଗରିବ ପିଲାଟିଏ ଆପଣମାନଙ୍କ ଦୟାରୁ ପାଠ ପଢୁଛି । ଦୟାକରି ଯଦି ଏ ଗରିବ ବ୍ରାହ୍ମଣ ପିଲାଟି ପ୍ରତି ଦୃଷ୍ଟି ଦିଅନ୍ତେ...

ତୁ ଆର୍ଟସ ପଢୁଛୁ ନା ସାଇନ୍ସ ! ସେ ପୁଣି ପଚାରିଲେ ।

ମୁଁ କହିଲି, ନା ଆଜ୍ଞା ଆର୍ଟସ ।

ମୁହଁଟାକୁ ଆମ୍ବିଳିଆ କରି ନାକଟାକୁ ଭୂଲତା ପର୍ଯ୍ୟନ୍ତ ଟେକି ଚଷମା ତଳୁ ଶାଗୁଣା ଚାହିଁଲା ପରି ନିରିଖେଇ ଚାହିଁ ବାବୁ କହିଲେ, Arts ! Oh, such a nasty department ! You are not an intelligent boy. ତୁ ଗୋଟାଏ ଗଧ ପିଲା । ଖାଲି ଯାହା ଘୋଷୁଛୁ । ଛି-ଛି ମଣିଷ ହେଇ ପୁଣି ଆର୍ଟସ ପଢ଼ନ୍ତା ? ମୋ ଜୋଇଁ ଅଠରବର୍ଷରେ ବି.ଏସ୍‌ସି.ପରୀକ୍ଷା ଦେଇଛି । ଆଃ କି ତୀକ୍ଷ୍ଣ ବୁଦ୍ଧି ! ଇଞ୍ଜିନିୟର ହେବ ଏ ବର୍ଷ । ଖାଲି କୁଡ଼ କୁଡ଼ ଟଙ୍କା ପାଇବ । ଫରେନ ଯିବ ବୋଲି ମୋତେ ଟଙ୍କା ମାଗୁଥିଲା । ଦଶହଜାର ଗୋଟାଏ ଚେକ୍ କାଟିଦେଇ ଆସିଛି । ତୁମେଗୁଡ଼ାକ କେଉଁଠୁ

ଆସିଛ କାଙ୍ଗାଳ ପିଲା ! ଖାଲି ଘୋଷି ଘୋଷି ପାସ କରିବା ଜାଣ । ଆଉ ଏ ମଠ ଧନକୁ ଶୋଷିବା ଜାଣ । ସେଠି ସେମିତି ହରିଡ଼ାଖଣ୍ଡିରେ ସତେଇଶ ଜଣ ପିଲା ମାଗନ୍ତା କାଙ୍ଗାଳ ପରି ପଡ଼ିରହିଥିଲେ । ମଣିଷ ଏଗୁଡ଼ାଙ୍କୁ କେତେ ଦେବ ? ବାବା, ଠାକୁର ଧନ ଏ । କାହିଁକି ଲୋଭ କରୁଛ ଏକୁ ? ଟିକିଏ ଭଲା ବୁଝନ୍ତେ, ଛି-ଛି କି ଅଲାଜୁକ ଏଗୁଡ଼ା ?

ବାବୁଙ୍କର ଇଉକାଲିପଟାସ୍ ଗଛ ପରି ଚେହେରା ଦେଖି ଆଉ ତାଙ୍କ ଘଡ଼ଘଡ଼ି ମାଇଲା ପରି କଥା ଶୁଣି, ବିଲାତୀ କୁକୁରକୁ ଦେଖି ଦେଖି ଦେଶୀ କୁକୁର ଯେମିତି ଲାଙ୍ଗୁଳ ଗୁଞ୍ଜି ପଳାଏ ସେମିତି ମୁଁ ପଛେଇ ପଛେଇ ତାଙ୍କ ଆଗରୁ ପଳେଇ ଆସିଲି । ତାଙ୍କର ସେ କଥା, ତାଙ୍କର ସେ ଚାହାଣି ଦେଖି ମୋ ତଳିପେଟର ଅନ୍ତ ସବୁ ଦୁହିଁ ହେଇଗଲା । ବାବାରେ, ଏଣ୍ଡାଓମେଣ୍ଟ ଇନ୍‌ସପେକ୍ଟରଗୁଡ଼ା ପୁଣି ଏମିତି, କ'ଣ ନ କରିପାରନ୍ତି ସେ । ସ୍ୱୟଂ ଠାକୁରଙ୍କର ଡାହାଣହାତ । ଯାହା ଇଚ୍ଛା କରିଲେ ତାହା କରିପାରିବେ । ଆଗକୁ ଚାହିଁ ମୋର ଭବିଷ୍ୟତ୍‌ଟାକୁ ନିର୍ଣ୍ଣୟ କରିବା ପାଇଁ ଅନ୍ଧାର ଭିତରୁ କିଛି ଖୋଜିବାକୁ ଯାଉଥିଲାବେଳେ ପଛରୁ ହଠାତ୍ ଡାକ ଶୁଣି ଅଟକିଗଲି । ବୁଲି ଚାହିଁବାକୁ ବି ସାହସ ହେଲା ନାହିଁ । ଇନ୍‌ସପେକ୍ଟର ସାହେବ ତାଙ୍କର ଶେଷ ବିଚାର ମୋପାଇଁ କରିସାରିଥିଲେ - ଶୁକ୍ଲ, ତୋପାଇଁ ମଠ ଆଉ ବୃତ୍ତି ଦେଇପାରିବ ନାହିଁ । ବିଶେଷକରି ତୋଭଳି ପିଲା ବା ମଠର କ'ଣ କରିପାରିବେ ? ମୁଁ ଏଥର କଟକ ଗଲେ କମିସନର ସାହେବଙ୍କୁ କହି ତୋ ବୃତ୍ତିଟାକୁ କାଟିଦେବି ।

ସେତିକି ମୋ ପକ୍ଷରେ ଯଥେଷ୍ଟ । ଆଖି ଦି'ଟା ମୋର ବୋଧହୁଏ କୋଟର ଭିତରୁ ବାହାରି ଆସୁଥିଲା । ଆହୁରି ଦୁଇଟି ବର୍ଷ କଲେଜରୁ ପାଠ ଶେଷ ହେବାକୁ । ଘରୁ ବିଲପାଟ ଡେଇଁ ରୋଜ ପାଞ୍ଚ ପାଞ୍ଚ କରି ଦଶମାଇଲ ବାଟ ଚାଲିବାକୁ ହେବ । ସେଥିରେ ପୁଣି ଘରେ ମୋର ଯେଉଁ ଅବସ୍ଥା । ନିରବରେ ଗୋପାଳଜୀଉଙ୍କ ଉଦ୍ଦେଶ୍ୟରେ ପ୍ରଣତି ରଚିଲି - ପ୍ରଭୁହେ, ତୁମେ ଜାଣ !

× × × ×

ସେ ଆଜକୁ ବହୁଦିନ ତଳର କଥା । ପ୍ରୌଢ଼ ବୟସରେ ମୋର ଏଇ ସ୍ମୃତି ଦେଖାଦିଏ ବହୁବାର । ନାଳକୂଳ ମଠର ଇତିବୃତ୍ତି ନୁହେଁ ମୋ ଜୀବନର ଏକ କ୍ଷୁଦ୍ର ଭାଗର ଇତିକଥା ସହିତ ଜଡ଼ିତ ଏଇ କେତୋଟି ସ୍ଥାନ, କାଳ ଆଉ ପାତ୍ର । ସବୁଗୁଡ଼ିକରେ ଆଜି ବହୁଳ ପରିବର୍ତ୍ତନ ଘଟିଯାଇଛି । ନାଳକୂଳ ମଠର ଚଉତରା ପାଚେରି ଭାଙ୍ଗିଯାଇଛି । ଟହଲିଆ ନାହାନ୍ତି, ନିୟମିତ ଦରମାପତ୍ର ନ ପାଇ କେହି ରହୁ ନାହାନ୍ତି । ସଞ୍ଜେ ସକାଳେ ଗୋପାଳଙ୍କ ଆରତିର ଘଣ୍ଟା କେବେ କେବେ ଅତି ଜୀର୍ଣ୍ଣ ସ୍ୱରରେ ଧ୍ୱନିତ ହୁଏ । ନିତ୍ୟ ଭୋଗର ଧୂପ ଦିପହରର ଧୂଆଁଳିଆ ବାଆ ସହିତ କେବେ ଅବା ନିର୍ଜନ ରାତ୍ରିର

କୁହେଳି ସହିତ କେଉଁଠି ଅଜଣାରେ ହଜିଯାଏ । ରାତ୍ରି ଶେଷର ସ୍ୱପ୍ନକୁ ସ୍ୱାଗତ ଜଣେଇ ମଠ ବାଡ଼ି ସେ ପଟରେ ଏଣ୍ଡାଓମେଣ୍ଟ ତରଫରୁ ନୂଆ କରାହେଇଥିବା କୁକୁଡ଼ା ଫାର୍ମରୁ କେତୋଟି କୁକୁଡ଼ା ରାବିଉଠନ୍ତି - କୋକ୍‌କୋ-କୋ ରିକୋକ୍ କୋ-କୋ - ଶାନ୍ତିର କ୍ଷୀଣ ମର୍ମଧ୍ୱନି । ଆଉ ସକାଳର କୋହଳିଆ ହାଓ୍ୱାରେ ମଠ ପୋଖରୀରେ ଚାଷ କରାହୋଇଥିବା ମାଛଗୁଡ଼ା ଚକ୍ ଚକ୍ କରି ଖେଳି ବୁଲନ୍ତି ।

ହାଉଡ଼ୀମା ବହୁଦିନରୁ ହଜିଛି । ନାରଣ ଗୃହସ୍ଥ । ଘର ତାର ସ୍ୱଚ୍ଛଳ ନୁହେଁ । ପଢ଼ାପଢ଼ି ତ ହେଲା ନାହିଁ, ପିଲାବେଳୁ ଅକଳରେ ପଡ଼ି ବାହାହୋଇ ବିଚରା ଛ'ଟି ପୁଅଝିଅର ବାପ । ନେପାଳବାବୁ କିନ୍ତୁ ଖୁବ୍ ଜୋର୍‌ରେ ଚାଲିଯାଇଛନ୍ତି । କଥାର ଭୋଜବାଜିରେ, ବାହାର କରାମତିରେ ଆଉ ହାତର କଲମ ଜୋରରେ କେତେଟା ମଠର ସର୍ବନାଶ ସେ କରିଛନ୍ତି ତା'ର ଖବର ମୁଁ ରଖି ନାହିଁ । ଏଣ୍ଡାଓମେଣ୍ଟ ବିଭାଗ ରଖିଛନ୍ତି ସତ । ସବୁଗୁଡ଼ିକ କିନ୍ତୁ ସୁପାରିସ । ନେପାଳବାବୁଙ୍କର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ୍ ସବୁ ଉଜ୍ଜ୍ୱଳ । ଆଉ ମୁଁ ? ଏକ ଅପଚୟମାନ ସରୀସୃପର ପୁଚ୍ଛ ପରି ଆଶା ଆକାଂକ୍ଷାର କୁହେଳିକୁ ଜାବୁଡ଼ି ଧରି କେତେକାଳ ଗୁରଣ୍ଡି ବୁଲିବି କିଏ ଜାଣେ ?

(ଗଳ୍ପଟିର କଥାବସ୍ତୁରେ ସତ୍ୟତାର ଆଧିକ୍ୟ ଥିଲେ ମଧ ଏହା ମୋର ନିଛକ ସ୍ମୃତି କଥା ନୁହେଁ । କଳ୍ପନାର ଡୋରରେ ବନ୍ଧା ସବୁଗୁଡ଼ିକ ଚରିତ୍ର, ସ୍ଥାନ ଓ କାଳ । ସଂପୃକ୍ତ ବ୍ୟକ୍ତିଗୁଡ଼ିକଙ୍କ ମଧ୍ୟରୁ କାହାରି ସହିତ କୌଣସି ବ୍ୟକ୍ତିବିଶେଷଙ୍କର କାଳ୍ପନିକ ସମ୍ପର୍କ ସ୍ଥାପନ କରିବା ଉଚିତ ନୁହେଁ ।)

[୧୯୬୫]

# ଦଉଡ଼ନା ବଡ଼ ଖରା

- ଏ ଟୁନୁ ! ଖରାଟାରେ ଏମତି କାହିଁକି ହଉଛ ? ଯାଅ, ଘରକୁ ଯାଅ । ଖରାରେ ଦଉଡ଼ନା କହୁଛି...

- ନାଇଁ ବାପା, ଦଉଡୁନି । ଟୁନି ଘରକୁ ଯିବି । ମା ଅଛନ୍ତି ସେଠି ।

- ନା, ନା, ଖରାରେ ପିଲାମାନେ ବାହାରକୁ ଯା'ନ୍ତିନି । ଯାଅ ଭିତରକୁ ଯାଅ, ଶୋଇପଡ଼ ଥିରି । ସୁନା ପିଲା ।

ଟୁନୁ ଶିଷ୍ଟ ପିଲା । ବାଡ଼ି ପଟୁ ଭିତରକୁ ଯାଉ ଯାଉ ଦୁଇପଦ ଗୀତ ବୋଲିଦେଲା- ''ଦଉଡ଼ ନା ବଡ଼ ଖରା, ହରିଣ ନ ଦିଏ ଧରା ।'' ବିମଳବାବୁ ଝରକା ଦେଇ ବାହାରକୁ ଚାହିଁଲେ । ଟୁନୁ କଣ ତାଙ୍କ କଥାକୁ ଥଟ୍ଟା କଲା ? ନାଇଁମ, ଖୁବ୍ ଶିଷ୍ଟ ପିଲାଟିଏ । ବର୍ଣ୍ଣବୋଧଟା ମୁଖସ୍ଥ କରିଦେଇଛି କି ନା, ଏଇମିତି ମନେ ପଡ଼ିଗଲା କଥାକୁ କଥା । ପିଲାଟା କିନ୍ତୁ ଖୁବ୍ ସ୍ମାର୍ଟ । ମାଡ଼ାମ୍ ସ୍ମିଥ୍ କହୁ ନ ଥିଲେ ? - ପିଲାଟାକୁ ଆପଣ ଡାଇରେକ୍ଟ ଷ୍ଟାଣ୍ଡାର୍ଡ଼ ଟୁରେ ଏଡ଼୍ମିଶନ କରେଇ ପାରିଥାନ୍ତେ ମି. ରଥ । ବାହାରେ ସତରେ ପ୍ରଚଣ୍ଡ ଖରା ! ଏଇ ଖରାରେ କେମିତି ଯେ ଇଏ ଯାଇଛି ଗାଁ ବୁଲି । ଆଚ୍ଛା ! ଖରା ସହିତ ହରିଣର କି ସମ୍ପର୍କ ଥାଇପାରେ ? ମଧୁ ରାଓ ଖରାରେ ଦଉଡ଼ିବାକୁ ମନା କରି ହରିଣଟାକୁ ପୁଣି କାହିଁକି ତା ସହିତ ଯୋଡ଼ିଛନ୍ତି ? କିଏ କ'ଣ ଏଇ ଖରାରେ ହରିଣ ପଛରେ ଦଉଡ଼େ ? ଧେତ୍, ଯେତେ ସବୁ ବାଜେ କଥା । ମନକୁ ଯାହା ଆସିଲା ପଦ ପଡ଼ିଲେଇ ହେଲା । ଆବସର୍ଡ଼ !

ସତରେ ପ୍ରଚଣ୍ଡ ଖରା ! ମରୁଭୂମି ହେଇଥିଲେ ଦୂରରେ ଏଇନେ ମରୀଚିକା ନାଚୁଥାନ୍ତା ! ହ୍ୟାପ୍ ମରୀଚିକାଟା ତଥାପି ଭୂଗୋଳର ବସ୍ତୁ ହେଇ ରହିଗଲା । ଅନ୍ତତଃ ଥରେ ହେଲେ ସେଇଟାକୁ ଅନୁଭବ କରିବା ଉଚିତ । କେତେ କଣ କବିତା, ନାଟକ ଲେଖିଦେଇଗଲେ ପୃଥିବୀଯାକର ସାହିତ୍ୟିକ ତା'ଉପରେ, ଅଥଚ ଥରେ ହେଲେ ପ୍ରତ୍ୟକ୍ଷ କରିହେଲା ନାହିଁ ? ନାଃ ଏଇଥର ଦେଖିବାକୁଇ ହେବ । ମରୁଭୂମି ନ ହେଲେ ବି ଏଇ ପାହାଡ଼ିଆ ଭୂଇଁର ନିଛାଟିଆ ଟାଙ୍ଗର ଉପରେ ଏବେ ଏଇ ଖରାରେ ନିଶ୍ଚୟ ନାଚୁଥିବ ମରୀଚିକା । ବୈଶାଖୀ ଝାଞ୍ଜିର ବାବନାଭୂତ ଭିତରେ କୁହୁଳି କୁହୁଳି । ଅଶରୀରୀ ଜଳର ଅସରନ୍ତି ଝର ଦିହରେ ତା'ର ଚିକ୍ ଚିକ୍ ମାରୁଥିବା ରୁପା ଆଉଟା ଏଇ ଜଳନ୍ତା ଖରା । ଆଉ କେଉଁଠି କେମିତି ବାଟବଣା ବାଟୋଇ କି ସାଥିଖୋଜା ହରିଣଟାଏ ଶୋଷରେ ଆଉଟି ହେଇ ଧାଉଁଥିବ ପଛରେ ପଛରେ... । ସତେ ଏଇ

ଖରାରେ ତେବେ ଖାଲି ମଣିଷ ନୁହେଁ, ପଶୁ, ପକ୍ଷୀ, କୀଟ, ପତଙ୍ଗ ସମସ୍ତେ ବି ଦଉଡୁଛନ୍ତି । ତମେ ଇଚ୍ଛା କର ବା ନ କର । ତମର ବଳ ଥାଉ କି ନ ଥାଉ, ଦଉଡ଼ିବାକୁଇ ହବ । ତମେ ହୁଏତ ଶେଷରେ କହିପାର ଓଃ ବେକାରଟାରେ ମଣିଷ ଏତେ ଦଉଡ଼ିଲା ! କିନ୍ତୁ ଦଉଡ଼ିବାକୁ ପଡ଼ିବ । କେତେ ଏମିତି ଦଉଡ଼ା ନ ହେଇଛି ସତେ ! ଇଚ୍ଛା ବିରୋଧରେ ଶକ୍ତି ବିରୋଧରେ । ସେଦିନ ମଝିଟାରୁ ଅଫିସ୍ ଛୁଟି । କ'ଣ ନା କିଏ ଗୋଟାଏ ମିନିଷ୍ଟର ମରିଗଲା କେଉଁଠି ଗୋଟାଏ ଏୟାରଂକ୍ରାଶ୍ । ଆଗରୁ ହେଲେ ଜାଣିଥିଲେ କିଏ କିଛି ପ୍ଲାନଟାଏ କରିଥାନ୍ତା । ଏମାନେ ଭାବନ୍ତି ଯେମିତି ଯେତେ ସବୁ ପ୍ଲାନ ଖାଲି କମ୍ୟୁନିଟି ପାଇଁ, ଇଣ୍ଡିଭିଜୁଆଲ୍‌ଟି ବା ଇଣ୍ଡିଭିଜୁଆଲ ପ୍ଲାନ ଏମିତି ପୁଣି ନିଶ୍ଚୟ କିଛି ଅଛି ଏବଂ ସେଇଟାକୁ ଅନ୍ତତଃ ଗୋଟାଏ ଡେମୋକ୍ରାଟିକ୍ କଣ୍ଟ୍ରିର କର୍ମକର୍ତ୍ତାମାନେ ବୁଝିବା ଉଚିତ । ଓ, ଏଇଟା ପରା ପିଓର ଡେମୋକ୍ରେଟିକ୍ ନୁହେଁ । ସୋସାଲିଷ୍ଟିକ୍ ଡେମୋକ୍ରାସି ନା ଡେମୋକ୍ରେଟିକ୍ ସୋସାଲିଜମ୍ । ନନ୍‌ସେନ୍‌ସ ! ଯେତେ ସବୁ କନ୍‌ଫ୍ୟୁଜନ । ପଲିଟିକ୍‌ସ ନାଁରେ ଯେତେ ସବୁ ନିଉରୋକ୍ରେସି ଦେଶଟାକୁ କୋରି ପକେଇଲେଣି । ଆଚ୍ଛା, ମିନିଷ୍ଟର ମୃତ୍ୟୁ ସାଙ୍ଗକୁ ରିକ୍‌ସାବାଲାଙ୍କର ବି ଷ୍ଟ୍ରାଇକ୍ : ପୁଣି ତା ସାଙ୍ଗକୁ ସାଇକେଲଟା ବି ହଠାତ୍ ଆଉଟ୍ ଅଫ୍ ଅର୍ଡ଼ର ? ଏବଂ ସର୍ବୋପରି ପ୍ରଚଣ୍ଡ ଖରା ! ଯା'ର କ'ଣ କିଛି ମାନେ ହୁଏ ! କାର୍ଯ୍ୟକାରଣ ସମ୍ପର୍କଟା ବି ନିଶ୍ଚୟ ନିଉରୋଟିକ୍ ପେସେଣ୍ଟ ହୋଇଯାଇଛି କେଉଁଦିନୁ । କାରଣ ନ ଥାଇ ଅନେକ କାର୍ଯ୍ୟ ଘଟୁଛି ଏବଂ ଅନେକ କାରଣ କେମିତି କେଜାଣି କାର୍ଯ୍ୟହୀନ ହେଇ ପଡ଼ିଛନ୍ତି । ଚାଲିବାକୁ ନିଶ୍ଚୟ ହେବ । ତେବେ ଏ.ଜି. ଅଫିସଠୁଁ ରାମକୃଷ୍ଣ ମିଶନ - ଏ ଯେ ରୀତିମତ ପଣାସଂକ୍ରାନ୍ତିକୁ ଘଣ୍ଟପାଟୁଆଙ୍କ ଅଗ୍ନିପାର୍ଟ ମିରାକ୍ଲ । ଅସମ୍ଭବ ହେଲେ ବି ଅଗତ୍ୟା - ଖୁବ୍ ସମ୍ଭବ ରାଜମହଲ ପାଖାପାଖି ଟିକିଏ ଆଗକୁ ରାସ୍ତା କଡ଼ରେ ପନ୍ଦର ଫୁଟର ବିରାଟ ସାଇନ୍ ବୋର୍ଡ଼ଟା- Things Go Better with Cocacola- କମ୍ପାନୀଗୁଡ଼ା ନିଶ୍ଚୟ ମାରାତ୍ମକ ସାଇକୋଲୋଜିଷ୍ଟ । ଉପରେ ବିଷୁବମଣ୍ଡଳୀୟ ସୂର୍ଯ୍ୟ ସାଙ୍ଗକୁ ତଳେ ବିଷୁଭିଅସ୍‌ର ତରଳକୃଷ୍ଣଲାଭା, ଏବଂ କଡ଼କୁ ଏଇ ବିଜ୍ଞାପନଟା ନିଶ୍ଚୟ ପର୍ବତ ଉପରେ ଯିଶୁଙ୍କ ପ୍ରିଚିଙ୍ଗ ଭଳି ଅଭୟବାଣୀ ଦେଉଥିଲା, ''ପଥିକମାନେ ଆଦୌ ଭୟ କରନା । ମୋ ନିକଟକୁ ଆସ । ମୁଁ ତୁମକୁ ଅଭୟ ଦେବି । ଶାନ୍ତି ଦେବି ଏବଂ ଆଗକୁ ଯିବା ପାଇଁ ଶକ୍ତି ଦେବି ।'' ନାଃ, ଆଉ ଦଉଡ଼ି ହବ ନାହିଁ । ଅବସ୍ଥା ଖରାପ ହୋଇଗଲାଣି । ଲେଟାସ ହେଭ ଏ ଡ୍ରିଙ୍କ । ଷ୍ଟଲ ଭିତରକୁ ପଶି ଯାଉଁ ଯାଉଁ ମଟର ବାଇକ୍‌ଟାର ବ୍ରେକ୍ କସି ଓହ୍ଲାଇ ଆସୁଥିଲା ଅତୀନ୍ ।

- ହେଲୋ ବିମଳ : ଗୁଡ୍ ନୁନ୍, ଖବର କ'ଣ, ଖରାରେ ମାର୍ଚ୍ଚ କାହିଁକି ? ଅଫିସ ?

- ହାଫ୍ ଡେ । ମିନିଷ୍ଟର ଡେଡ୍ ବାଇ ଏଆରକ୍ରାଶ୍ ।

ଆଇ ସି ! ଏଇଟା ତେବେ ମନ୍ତ୍ରୀ ମହାଶୟଙ୍କର ପରମ ଆନୁଗତ୍ୟ ସ୍ୱୀକାର କରା ହେଉଛି । ଖରାରେ ଦଉଡ଼ି ଶୋକ ଦିବସ ପାଳନ କରାହେଉଛି ନିଶ୍ଚୟ ! ବେଶ୍, ବେଶ୍ ହେଭ ଏ ଡ୍ରିଙ୍କ । ଏକା ନିଶ୍ୱାସରେ ଦୁଇ ଚାରି ଢୋକ ଟାଣିଦେଇ ଅତୀନ୍ କହିଲା- ସତରେ ପ୍ରଚଣ୍ଡ ଖରା !

ରାଜସ୍ଥାନରେ ଦଶଜଣ ଲୋକ ମରିଗଲେଣି ଆଜ୍ଞା ।

ଷ୍ଟଲମେନ୍ କହିଲା । ଇଲଷ୍ଟ୍ରେଟେଡ଼ ଉଇକ୍ଲିଟା ବଢ଼େଇ ଦେଇ ଆଉ ଜଣେ ପାନାର୍ଥୀ କହିଲେ- ଦେଖନ୍ତୁ କି ଅବସ୍ଥା ।

କଭର ପେଜ୍‌ରେ- ୱାଟର କ୍ରାଇସିସ୍ ଇନ୍ ଦିଲ୍ଲୀ ଏଣ୍ଡ ବମ୍ବେ... ମୋଷ୍ଟ ଅଫ୍ ଦି ଟାଙ୍କସ୍ ଗୋ ଡ୍ରାଏ.. ରାସ୍ତାକଡ଼ର କେଇଟା ପାଇପ ପାଖରେ କ୍ୟୁ । ଆଉ କେତେଟା ପାଇପ ପାଖରେ ଫୁଟ୍‌ପାଥ୍ ଆଉ ରାସ୍ତାକୁ ଗୃହିଣୀମାନେ ଧୋବା ଘାଟରେ ପରିଣତ କରିଦେଇଛନ୍ତି ଏବଂ ଆଉ କେଉଁଠି ଗୋଟାଏ ଟିଉବ୍‌ୱେଲ୍‌ର ପାଇପରେ ଗୋଟାଏ ଲଙ୍ଗଳା ଛୁଆ ମୁହଁ ଲଗାଇ ଯେମିତି ପାଣିକୁ ଶୋଷି ଆଣିବ ଭାବୁଛି । ଅତୀନ୍ କହିଲା ହଠାତ୍ ଜଣେ ଦରଦୀ ଦାର୍ଶନିକ ଭଳି- ଏଭ୍ରିଥିଙ୍ଗ୍ ଗୋଜ୍ ଡ୍ରାଏ ସାର୍ । ଦିଲ୍ଲୀ ବମ୍ବେ ତ କାହିଁ କେଉଁଠି, ଏଇ ଓଡ଼ିଶା କଥା କହୁ ନାହାନ୍ତି । ଆପଣମାନେ କେବେ ଗାଁକୁ ଯା'ନ୍ତି ? ଯାଇ ଦେଖନ୍ତୁ । ଟୁବ ଗଡ଼ିଆ ପୋଖରୀ, ନାଳ, ନଈ, କୂଅ, ବାମ୍ଫି ସବୁ ଶୁଖିଲା । ତା ସାଙ୍ଗକୁ ଲୋକଙ୍କ ଚାଳ ଶୁଖିଲା, ମୁହଁ ଶୁଖିଲା, ପେଟ ବି ଶୁଖିଲା ।

ଅତୀନ୍‌ର ମୁହଁ ଉପରୁ ସେତେବେଳକୁ ଜକେଇ ଉଠିଥିବା ଝାଳ ବିନ୍ଦୁଗୁଡ଼ାକ- କୋକାକୋଲାର ପରମ ଆସ୍ୱାଦନରେ ନିଶ୍ଚୟ ଶୁଖି ଆସୁଥିଲା । ଭଦ୍ରଲୋକଜଣକ ତାକୁ ସନ୍ଦେହୀ ଆଖିରେ ଆଉ ଥରେ ଚାହିଁଲେ ଏବଂ ମାଗାଜିନ୍‌ଟା ମାଗିନେଇ ଷ୍ଟଲରୁ ବାହାରିଗଲେ । ଅତୀନ୍ ଗଗ୍ଲସଟା କାଢ଼ିଦେଇ ସେଇଆଡ଼େ ଚାହିଁଲା ଏବଂ ପୁଣି ଲଗେଇଦେଇ ଆଉ ଗୋଟାଏ ସକ୍‌ରେ ବୋତଲଟାକୁ ନିଃଶେଷ କରିଦେଇ ଟ୍ରେରେ ରଖିଦେଲା ।

ତା'ପରେ, ଆଉ ଖବରାଖବର କ'ଣ ? କେତେଦିନ ଆଉ ଶୁଖିଲାଟାରେ ଏମିତି ଖରାରେ ଦଉଡ଼ା ହେଉଥିବ ?

- ମାନେ ? ଓଦା ଖରା ବୋଲି ଏମିତି କିଛି ଗୋଟାଏ ଆବିଷ୍କାର କରିଛୁ ବୋଧହୁଏ ?

- ନା, ଠିକ୍ ସେଇଟା ନ ହେଲେ ବି ଓଦା ପାଇଁ ଖରାରେ ଦଉଡ଼ିବାକୁ ହେଉଛି । ଏଇ ଧର, ଯେମିତି ଖରା ଦଉଡ଼ି ଦଉଡ଼ି ବର୍ଷା ପାଖକୁ ହିଁ ଯାଏ ।

- ଓ ! ତୁ ବି ତ ଖରାରେ ଦଉଡୁଛୁ !

- ନିଶ୍ଚୟ, ଏଭ୍ରିବଡ଼ି ରନ୍‌ସ ।

- ତୁ ତେବେ ଦଉଡ଼ିବା ପରେ ବର୍ଷା ପାଣିରେ ଭିଜୁଛୁ ?

- ବରଂ ଭିଜି ଭିଜି ଦଉଡୁଛି କହ ।

- ହଁ, ତା' ହୋଇପାରେ । ତୁ କଣ୍ଟ୍ରାକ୍ଟର । ତୋ ପକ୍ଷରେ ଏ ପ୍ରକାର କଣ୍ଟ୍ରାଡିକ୍ସନ୍ ଖୁବ୍ ପସିବ୍ଲ । ଲକ୍‌କି ମେନ୍ । ବାଇକ୍, ବାଲାନ୍ସ, ବାର ଆଣ୍ଡ ବିଅର୍ ସବୁ ଯେତେବେଳେ ରହିଛି ଏ ପ୍ରକାର ଖରାରେ ଭିଜି ଭିଜି ଦଉଡ଼ିବାଟା ତୋ ପକ୍ଷରେ ଖୁବ୍ ନର୍ମାଲ । କିନ୍ତୁ ଏଇ ଦଉଡ଼ିବାର ଶେଷ କେଉଁଠି ?

- ବନ୍ଧୁ, ଶାସ୍ତ୍ରବାକ୍ୟ ସ୍ମରଣ କର- ପୁନରପି ଜନନଂ, ପୁନରପି ମରଣଂ.. ଜନ୍ମ ହେବାର ଶେଷ କେଉଁଠି ? ଖରା-ବର୍ଷା-ଶୀତ । ପୁଣି ଖରା, ପୁଣି ବର୍ଷା... ଆଚ୍ଛା ଭାଇ ଧନ୍ୟବାଦ । ବ୍ୟସ୍ତ ଅଛି । ପୁଣି ଦେଖା ହବ । ଲିଫ୍‌ଟ ଦେବି ?

- ନା, ଟିକିଏ କଳ୍ପନା ଫ୍ଲାଟ ହେଇ ଯିବି ।

ଅତୀନ୍ ବାଇକ୍‌ରେ ବସିଲା । - ବୁଝିଲ ମି. ରଥ ! ଲାଇଫ୍ ଗୋଜ ଡ୍ରାଏ ଉଇଦାଉଟ ଏ ଓ୍ଵେଞ୍ଚ... ଗେଟ୍ ଏ ଓମେନ୍ ମାଇଁ ବୟ, ତା'ପରେ ବୁଝିବୁ । ଶୁଖିଲା ଶୁଖିଲାଟାରେ ଆର୍ଦ୍ରତା କଣ ବୁଝିବା ସମ୍ଭବ ନୁହେଁ... ।

ଅତୀନ୍ ବେପରୱା ଭାବେ ଷ୍ଟାର୍ଟ ଦେଲା ଗାଡ଼ିରେ । ଅସହ୍ୟ ଏକଟଣା ଚିତ୍କାର କରି ଗାଡ଼ିଟା ମାଡ଼ିଗଲା ଆଗକୁ । ପଛରେ ଛାଡ଼ିଯାଇଥିବା କେଇ କୁଣ୍ଡଳୀ କଳା ଧୂଆଁ ଭିତରେ ବୈଶାଖୀ ଝାଞ୍ଜିଟା ଯେମିତି ହଠାତ୍ ଅସାଡ଼ ହେଇ ପଡ଼ିଲା କେଇଟା ମୁହୂର୍ତ୍ତ । ହଁ ଏ ଦଉଡ଼ାର ତେବେ ଶେଷ ନାହିଁ । ପୁଣି ଖରା, ପୁଣି ବର୍ଷା । ଅଥଚ ସେଦିନ ଦାର୍ଶନିକ ଭଳି ଅତୀନ୍ କହିଥିଲା ନାରୀ ବିନା ଜୀବନ ଶୁଷ୍କ । ଜୀବନରେ ଯଦି କିଛି ଆର୍ଦ୍ରତା ପାଇବାକୁ ଚାହଁ ତେବେ ନାରୀର ଅନ୍ୱେଷଣ କର । ଅପରପକ୍ଷରେ ନାରୀ ବି ପୁରୁଷର ଅନ୍ୱେଷଣ କରୁ । ନାରୀମାନେ କ'ଣ ସେକ୍‌ସ ? କୁଞ୍ଜ ସେଦିନ ଚିଠି ଲେଖିଥିଲା- ମୋର ଇଲ୍ୟୁଜନ୍ ଭାଙ୍ଗିଯାଇଛି ବିମଳ । ବିବାହ ନ କରି ମୁଁ ଚାହିଁଥିଲି ଜୀବନକୁ ତିଳ ତିଳ ଭୋଗ କରିବି । ରସାଳରୁ କରିବି ରସାଳତର । କିନ୍ତୁ ବହୁଦିନ ମୁଁ ବାଟ ହୁଡ଼ିଛି । ପ୍ରଚୁର ଅର୍ଥ, ପ୍ରଚୁର ପ୍ରତିପତ୍ତି, ପ୍ରଚୁର ସ୍ୱପ୍ନ ଭିତରେ ମୁଁ ନିଜକୁ ଭୁଲିଯାଇଛି ଏବଂ ସେକ୍‌ସର ସମୁଦ୍ର ଭିତରେ ମୋ ଦେହର ପ୍ରତିଟି ଲୋମକୂପକୁ ଜାଳି ଦେଉଛି ସାହାରାର ଉତ୍ତପ୍ତ ବାଲିଝଡ଼ । ତୁ ସୁଖୀ, ତୁ ଭାଗ୍ୟବାନ୍... ତେବେ ? ନାରୀ ନିଶ୍ଚୟ ସେକ୍‌ସଠୁଁ କିଛି ତଫାତ୍... ଅଧିକ ନା କମ୍ ? ବିଜନ ସେଦିନ କହିଲା- ନାରୀ ସହିତ ଅର୍ଥର ସମ୍ପର୍କ ନିବିଡ଼ । ତୁ ଦେଖିପାରୁଛୁ ବିମଳ, ଦେଶର ବିବାହିତ ପରିବାର ଭିତରେ ଶତକଡ଼ା ନବେ ଭାଗ ଅସୁସ୍ଥ । ତୁମୁଳ ଝଡ଼, ତୁମୁଳ ଅଶାନ୍ତି, ଘେରି ରହିଛି ସେଠି । କାହିଁକି ? ଅର୍ଥ । ପ୍ରତିଦ୍ୱନ୍ଦ୍ୱିତାରେ ତୁମକୁ ଆଗେଇବାକୁ ହେବ । ଆହୁରି ଅର୍ଥ... ଆହୁରି ଅର୍ଥ...

- କିନ୍ତୁ ସ୍ୱଳ୍ପ ଅର୍ଥ ଭିତରେ ସାଧାରଣ ଚାଷୀ ମୂଲିଆ ତ ପୁଣି ପରିବାର ବାନ୍ଧୁଛି ? ଏଇ ଧର ତୁମର ଅଫିସ୍‌ର ପିଅନ ବିରଜା । ତୋରି କ୍ୱାର୍ଟର ପାଖରେ ତା'ବସା । ଜାଣିଥିବୁ ନିଶ୍ଚୟ । ଦିନରେ ଅଫିସ, ରାତିରେ ବ୍ୟବସାୟ । ସ୍ତ୍ରୀ ତାର ଗୋପାଳନ କରୁଛି ଅହର୍ନିଶ । ପିଲାଏ ସାହାଯ୍ୟ କରନ୍ତି ବାପା ମା'ଙ୍କୁ । ତାଙ୍କର ସୋଫା ନାହିଁ,

ଟେପ୍ ରେକର୍ଡ଼ର ନାହିଁ, ରେଫ୍ରିଜରେଟର ନାହିଁ କି କାଲ୍ ଗେସ୍ ଚୁଲା ନାହିଁ । କାହିଁ ଦିନେ ହେଲେ ତ ମୁଁ ସେମାନଙ୍କ ଘରେ ପାଟି ଶୁଣି ନାହିଁ । ଅଥଚ ତୁ ଜଣେ ପଦସ୍ଥ କର୍ମଚାରୀ ଓ ତୋର ବେଶ୍ କିଛି ସଭ୍ୟତାସୂଚକ ଆସବାବପତ୍ର ଅଛି । ଅଧିକ କିଛି ହେଇ ବି ପାରେ ଭବିଷ୍ୟତ୍‌ରେ...

- ବୁଝିଲ ବିମଳ ରଥେ, ଆମେ ଯେତେବେଳେ ଶିଶୁ ଥିଲେ ଖୁସିରେ ଅମେଧ ବି ଖାଇଛେଁ । ଅଜ୍ଞାନତା ଯଦି ସୁଖର ପଥ ହୁଏ ତେବେ ମଣିଷ ଆଜି ବହୁ ଜ୍ଞାନର ଅଧିକାରୀ ହେଇ ପଛେଇ ଯାଇଛି କହିବାକୁ ହେବ । ବୁଝିପାରୁଛ ତ ଯୁକ୍ତିଟା ତୁମର କିଭଳି ରିଡ଼ିକୁଲସ୍ ?

ଆଶ୍ଚର୍ଯ୍ୟ ! ମଣିଷ ତେବେ ଚାହେଁ କ'ଣ ? ଏ ନିଶ୍ଚୟ ସବୁ ଖାଲି ଖରାରେ ଦଉଡ଼ା । ତୁମେ ଦଉଡ଼ି ଦଉଡ଼ି ହୁଏତ କେଉଁଠି ଟିକିଏ ଛାଇ ପାଉଛ । କିନ୍ତୁ ଆଶ୍ଚର୍ଯ୍ୟ, ସେଇ ଛାଇଟା କେମିତି କେଜାଣି ପୁଣି ଖରା ପାଲଟିଯାଉଛି । ଦଉଡ଼, ପୁଣି ଦଉଡ଼... ଏଇ ତେବେ ପୃଥିବୀ ! ଯାଃ... ଯେତେ ସବୁ ଆବସର୍ଡ଼ିଟି, ଯେତେ ସବୁ ଅବିଶ୍ୱାସ, ସନ୍ଦେହ ଆଉ କନ୍‌ଫ୍ୟୁଜନ୍...

ବିମଳବାବୁ ଏଥର ଝାଡ଼ିଝୁଡ଼ି ହେଇ ବସିଲା ପରି ବସିଲେ । ନିଦରେ ଢୁଳଉଥିବା ଛାତ୍ରଟି ହଠାତ୍ ଚମକିପଡ଼ି ଆଖି ଦଳିଦେଲା ପରି ଆଖିକୁ ଦି ତିନିଥର ରଗଡ଼ି ଦେଲେ । ଚେୟାର୍ ଉପରେ ଆଉଜିପଡ଼ି ପୁଣି ଚାହିଁଲେ ବାହାରକୁ । ବାହାରେ ସତେ ପ୍ରଚଣ୍ଡ ଖରା । ସାମ୍ନାରେ କଲୋନୀର ନାଲିଗୋଡ଼ି ରାସ୍ତାଟା କେଇ ବାଙ୍କ ବୁଲି ମିଶିଛି ପକ୍‌କା ମେନ୍ ରୋଡ଼ରେ । ରୋଡ଼ କଡ଼ରେ କେଇଟା ଆକାଶିଆ, ଅର୍ଜୁନ ଆଉ ଚାକୁଣ୍ଡା ଗଛର ଛତରି ଯାଇଥିବା ଝାମ୍ପୁରା ଡାଳ ଦିହରେ କେଇଟା ଝୋଲାମରା ଗିଧ ଉଡୁଛନ୍ତି ବସୁଛନ୍ତି । ଟିକିଏ ଛାଡ଼ି ଫକିରପୁର ପଞ୍ଚାୟତ ହାଟରେ ଖୁନ୍ଦି ହୋଇଥିବା ମୁମୂର୍ଷ ଚାଳିଆ କେଇଟାକୁ ଲାଗି ନାଗରମଲ ମାରୱାଡ଼ିର ତିନି ତାଲା କୋଠା । ଚୂନ ଧଉଳା କାନ୍ଥରେ ବୈଶାଖୀ ଖରା ଚିକ୍‌ମିକ୍ ପଥର ଘଷୁଛି । ସେପାଖକୁ ଫକିରପୁର ବ୍ଲକ୍‌ର ଆଜବେଷ୍ଟସ୍ ଛାଉଣୀ ଅଫିସ ଘର, ପଞ୍ଚାୟତ ଅଫିସ, ଷ୍ଟୋର ରୁମ୍, ଗେରେଜ୍ ସବୁ ନିସ୍ତବ୍‌ଧ ହେଇଯାଇଛନ୍ତି ଏଇ ଖରାରେ । ମେନ୍‌ରୋଡ଼ର ଆରପାଖ ଦିଗନ୍ତ ଯାଏ ଲମ୍ବିଯାଇଛି ମାଳ ମାଳ କିଆରି । ଉଞ୍ଚ ଖାଲ ହୋଇ । ଲହଡ଼ି ଭାଙ୍ଗି । ମଝିରେ ମଝିରେ କେଉଁଠି ଟାଙ୍ଗର ଓ କେଉଁଠି ମୁଣ୍ଡିଆ । ବିଲ ହୁଡ଼ାରେ ଏଠି ସେଠି କେଇଟା ଗୋହିରା ଆଉ ଖେଣ୍ଟା ଖଜୁରି ଗଛ ରହି ରହି ଝାଞ୍ଜି ଭିତରେ ଥରି ଉଠୁଛନ୍ତି ଅସ୍ଥିସାର କେଇଟା କ୍ଷୁଧାର୍ତ୍ତ ବିପ୍ଳବୀ ପରି । ବିମଳବାବୁ ମରୀଚିକା ଦେଖିବା ପାଇଁ ଦୂରକୁ ଚାହିଁଲେ । ମୁଣ୍ଡିଆ ତଳେ ହୁଏତ ଚହଲା ପାଣି ପରି ଝିଲିମିଲି ଦେଖାଯିବ ଏବଂ ସେଥିରେ ଖଜୁରି ଗଛର ପ୍ରତିବିମ୍ବ ଦେଖାଯିବ । ସେ ଖୁବ୍ ସାବଧାନତା ଅବଲମ୍ବନ କରି ଚାହିଁଲେ । ହଠାତ୍ ପାହାଡ଼ ପରି ବୋଝେଇ ହେଇ ଟ୍ରକଟାଏ ରାସ୍ତାରେ ଚାଲିଗଲା ଅବଦମିତ

କ୍ରୋଧରେ ଗୁରୁ ଗୁରୁ ନିଷ୍ଫଳ ଗର୍ଜନ କରି । ତା ପଛକୁ ଆହୁରି ଗୋଟାଏ, ଆହୁରି ଗୋଟାଏ- ଏକ, ଦୁଇ, ତିନି, ଚାରି, ପାଞ୍ଚ... ପଛରେ ଠିକ୍ ଆଖି ଆଗରେ ଆସି ଠିଆ ହେଲା ବସ୍‌ଟାଏ ଟ୍ରକଗୁଡ଼ାର କଳା ଡିଜେଲ୍ ଧୂଆଁ ଆଉ ରାସ୍ତା ଉପର ନାଲି ଧୂଳିରେ ଅସ୍ପଷ୍ଟ ହେଇ । ହ୍ୟାପଃ, ଯେତେ ସବୁ ଆବ୍‌ଷ୍ଟାକ୍ଲ । ଖାଲି ପ୍ରମୋଶନରେ ତ ନୁହେଁ, ବସିବାରେ, ଚାଲିବାରେ, ଶୋଇବାରେ କି ବାଧା । ମଣିଷ ଟିକିଏ କିଛି ଚାହିଁ ଦେଖିବ ତା ବି କରେଇ ଦେବେନି ଏମାନେ । ଡ୍ରାଇଭରଗୁଡ଼ା ମେସିନ୍ ହେଇଗଲେଣି । ତା' ହେଇ ନ ଥିଲେ ମଣିଷ କ'ଣ ଏଇ ଖରାରେ ବାହାରକୁ ବାହାରେ ? ଆଉ ଏଇ ଯାତ୍ରୀଗୁଡ଼ାକ କୋଉ କମ୍ କି ?... କିନ୍ତୁ... ସତରେ କେତେ ଦଉଡ଼ ନ ହେଇଛି ଏଇ ଖରାରେ ଦିପହରିଆ କନକପୁର ବସ୍‌କୁ ? ହାଓଡ଼ା ପୁରୀ ପାସେଞ୍ଜର ଦିନ ଏଗାରଟା ବେଳେ ଅଟକେ ବିଜନପୁର ଷ୍ଟେସନରେ ଆଉ କନକପୁର ବସ୍ ଭିତରେ ଖୁନ୍ଦି ହେଇଯାନ୍ତି ଦୂରଦୂରାନ୍ତର କଲିକତିଆ ବିଦେଶୀସବୁ । ମାଳତୀପୁର, ନଗଶପୁର, ବଅନ୍ତିଆ ଆଉ ଛତିଖୋଲା ଏମିତି କାହିଁ କାହିଁକାର ଗାଁ ସବୁକୁ ବିଜନପୁର ଷ୍ଟେସନରୁ ସକାଳ ଓଳି ଏଇ ଗୋଟିକ ବୋଲି ଗାଡ଼ି । ସକାଳୁ ସକାଳୁ ବେଶି ଜଳଖିଆ ଖୋଜିଲେ ମା କହେ- ହେଇରେ କୁନା, ହଳଦୀବସନ୍ତ ଡାକିଲାଣି, ବାପା ଆସିବେ ଆଜି । ସେତିକି ଖାଇଦେ' । ଢେର ଢେର ଚିଜ ଖାଇବୁ ଆଜି । ତା' ପରେ କି ଆଉ ସକାଳୁଆ ସ୍କୁଲରେ ମନ ଲାଗେ ! କେମିତି ଏଗାରଟା ବାଜେ । ସ୍କୁଲ ଛୁଟି ହୁଏ ।

ତା'ପରେ ସେଇ ମୁହଁପୋଡ଼ା ଝାଇଁମରା ଖରାରେ ଦେ ଦଉଡ଼ ପାଟପୁର ବସ୍‌ଷ୍ଟାଣ୍ଡକୁ । ରାସ୍ତାକଡ଼କୁ ଅର୍ଜୁନ ଗଛମୂଳେ ସେଦିନେ ତାଳବରଡ଼ା ଛିଆ ଆଉ ଛଟାବାଡ଼ କରା ଦି'ଟା କି ତିନିଟା ଚାଳି-ବିଶୁନି ଗୁଡ଼ିଆର ଚା ଦୋକାନ, ବନ ସାହୁର ତେଜରାତି ଦୋକାନ ଆଉ ଖଜପାଟଣା ବରଜା ଶୁଣ୍ଢୀର ରେଡ଼ିମେଡ୍ ଷ୍ଟୋର । ବିଶୁନୁ ଗୁଡ଼ିଆ ବସ୍‌ଟାଇମ୍‌କୁ ଗୁଲୁଗୁଲା ଆଉ ପିଆଜି ପକାଏ କଡ଼ାରେ । ଅଧା କାଚ ବାହାରି ଯାଇଥିବା ଆଲମିରାର ଥାକ ଭିତରେ କେଇଟା ଥାଳିରେ ତେଲ ଜିଲିପି, ଦାନାଦାର ଆଉ ଗୁଡ଼ ଟବକା । ସ୍କୁଲ ଫେରନ୍ତି ଆଉଟି ହେଉଥିବା ପେଟ ଡାକଦିଏ ଗରମ ପିଆଜିର ବାସନା ଶୁଙ୍ଘି । ମନ କହେ - ହଁ, ଇଏ କ'ଣ ଭାରି ବଡ଼ । ବାପା ଆଣିଥିବେ କେତେ ନାହିଁ କେତେ କ'ଣ- ସନ୍ଦେଶ, ରସଗୋଲା, କମଳାଲେମ୍ବୁ ଆଉ ଖଜୁରିକୋଳି... । ବରଜା ଶୁଣ୍ଢୀ ଏଇଦିନେ ସରବତ ଦୋକାନ ଦିଏ । ଚାରିଟା ବାଉଁଶ ଖୁଣ୍ଟି ଉପରେ ଯୋଡ଼ାଯୋଡ଼ି ହେଇ କେଇଖଣ୍ଡ କିରାସିନି ପଟାର ଗୋଟାଏ ତକ୍ତା । ତା ଉପରେ ନାଲି ନେଳି ପାଣି ଭରତି ବୋତଲ ଦି ଧାଡ଼ି । ଆଃ, ସେତେବେଳେ ସିଏ ସବୁ ପାଣି ତ ନୁହେଁ- କେତେ ରୂପକଥାର ଅନାସ୍ୱାଦିତ, ଅନାଘ୍ରାତ ସ୍ୱାଦ ଏବଂ ଗନ୍ଧର ଅଫୁରନ୍ତ ନିର୍ଯାସ । ବରଜା ରଙ୍ଗ ସିରାରୁ ଦି ଚାମୁଚ ଆଉ ବସାଦହିରୁ ଚାମୁଚେ ଦେଇ ଦିଟା ଗ୍ଲାସରେ ସରବତ୍ ଭାଙ୍ଗେ- ଉପରେ ଦିଏ ବରଫ ମୁଠାଏ ସାଙ୍ଗକୁ ଟୋପାଏ ସେଣ୍ଟ୍ ।

ଦୁଇଅଣା ପଇସା ବଦଳରେ ମନେହୁଏ ଯେମିତି ସବୁ ସ୍ୱପ୍ନର ଆକାଂକ୍ଷାକୁ ବରଜା ସଫଳ କରିଦିଏ ସେଇ ରଙ୍ଗିନ୍ ସରବତ୍ ଭିତରେ... । ବେଳ ବଢ଼େ । ବସ୍ ଆସେ ଅଧା ପକ୍‌କା, ଅଧା କଚା ରାସ୍ତାରେ ଧିମେଇଁ ଧିମେଇଁ । ଅଧା ନାଲି ଆଉ ଅଧା ଧଳା ମହିନ୍ ଧୂଳିରେ ବୁଡ଼ି ବୁଡ଼ି । ନିର୍ଜଳା ଦିପହରେ ଗଛ ଛାଇରେ ବସ୍ ରଖି ଷ୍ଟାର୍ଟ ବନ୍ଦ କରେ ଡ୍ରାଇଭର । ବେକରୁ ଝାଳ ପୋଛି ଡାକ ଛାଡ଼େ- ହୋ ବିଶୁନୁ ସାହୁ ! ଆଣିଲ ଦେଖି, ଚାରି ଛ'ଟା ପିଆଜି, ଭାରି ତ କ'ଣ ବାସ ଚହଟଉଛ... । ଠେଲି ପେଲି ଯାତ୍ରୀ କେଇଟା ଓହ୍ଲାନ୍ତି । ପାଟପୁର ଭିତର ଦେଇ ଯିବେ କଉଁ କଉଁ ଗାଁ ସବୁକୁ । ଗଡସାହି, ଖଜପାଟଣା କି ବାଲିସରା । ବସ୍ ଉପରୁ ତାଙ୍କ ଜିନିଷ ସବୁ ଓହ୍ଲାହୁଏ । ଦରସିଝା ଦିହରେ ଟିକିଏ ପବନ ଲାଗିବା ଆଗରୁ ଝାଞ୍ଜି ବାଜେ ମୁହଁରେ । ରାସ୍ତାକଡ଼ରୁ ତଳକୁ ଗଡ଼ନ୍ତି ସଭିଏଁ, ପିଠିରେ ବୋକଚାଟି ମାନ ବାନ୍ଧିକରି । ବାପା ? ଫଁ ଫଁ ନିଃଶ୍ୱାସ ଛାଡ଼ି ବସ୍‌ଟା ଆଗକୁ ମାଡ଼ି ଚାଲେ ଏବଂ ପଛରେ ଧୂଳି ଝଡ଼ ଭିତରେ କ୍ରମଶଃ ହୋଇଯାଏ ଅଦୃଶ୍ୟ । ଏଇମିତି ଅନେକ ଦିପହରେ ବସ୍ ଧରା ହୋଇଛି । ଛୁଟିଦିନେ ଘରୁ ଲୁଚି ଆସି ବିଶୁନୁ ସାହୁ ଦୋକାନରେ ଘଣ୍ଟା ଘଣ୍ଟା ଅପେକ୍ଷା- ଏଇ ବିଶୁନୁଭାଇ, କନକପୁର ବସ୍ ଗଲାଣି ? କିହେ କୁନାନ୍ନା ଭାରି ତ କଣ ବସ୍‌କୁ ଚାହିଁଛ ନିତି ନିତି - ତୁ କହନା ବସ୍ ଗଲାଣି କି ନାହିଁ ।

- ବସ୍ କ'ଣ ଏ ଯାଏ ଅଛି ? ନାରଣପୁର ଧରିବଣି । ଯାଅ ଯାଅ ପଳାଅ । ଖରାଟାରେ ଏଠି ମୁହଁ କାନ ଶୁଖିଗଲାଣି... । ଆଃ, ସେ କାଳର ସେଇ ସାତ ପର ବିଶୁନୁ ସାହୁର ଦରଦ ଆଜି ଏକାନ୍ତ କେଉଁ ଆପଣାର ମଣିଷ ପାଖରେ ବି ଦୁର୍ଲଭ । ସେଦିନ ନାନୀ ଲେଖିଥିଲା- କୁନାରେ ! ଦେଖି ଯାଇଥିଲୁ ତୋ ଗଇଁ ଥିଲେ ବେମାର । କେତେ ଆପଣାର ତତେ ସେ କରି ନ ଥିଲେ ? ତୁ ସବୁ ଦେଖିଚାହିଁ ବି ଭୁଲିଗଲୁ । କେମିତି ତୋ ମନ କହିଲା ? ବଡ଼ ହେଲୁ, ଚାକିରି କଲୁ । ଭାଣିଜୀ ବାହାଘରକୁ ଟଙ୍କା କେଇଟା ମାଗିଲେ ଯେ ସେତକ ତୋ ଦେଇ ହେଲା ନାହିଁ ! କୋଡ଼ରେ କାଖରେ ଏତୁଟିଏ କଲୁ ଆଉ କାହିଁକି ? - ହୁଁ । ସବୁ ତେବେ ଦେଣନେଣର ବ୍ୟବସ୍ଥା । ଏତେ ଦେଇଛୁ, ଇମିତି ନବୁଁ । ବେଶ୍ ତ, କହିଦିଅ ତୁମ ସ୍ନେହ ସୋହାଗର ମୂଲ କେତେ ? ବିମଳବାବୁ ବଡ଼ ଅସ୍ୱସ୍ତି ବୋଧ କଲେ । ମେନ୍‌ରୋଡ଼ ଉପରୁ ବସ୍‌ଟା ସେତେବେଳକୁ ଚାଲିଯାଇଥିଲା ନିଛାଟିଆ ରାସ୍ତାଟାକୁ ଆହୁରି ଏକୁଟିଆ କରି । ନାନୀର ସତେ କି ମମତା ! ସେଦିନ ଏମିତି ଖରାବେଳେ ବାଲି ତାତିଥାଏ ଯେ ଧାନଟିଏ ପଡ଼ିଲେ ଖଇ ଫୁଟିଯିବ । ଆଗେ ଆଗେ ପଳେଇଲା ସିଏ । କେତେ ବା ବୟସ ସେତେବେଳେ ତା'ର । ଆଠ କି ଦଶ । ଘରେ ମା କହିଲା- ବୁଢ଼ୀରେ, ତୋ ସାନଭାଇଟା ପରା, କାଖେଇ ଆଣିଲୁ ନାହିଁ । କୁନି କୁନି ଗୋଡ଼ ଦିଟା ତା'ର କେମିତି ଲାଲ ପଡ଼ିଯାଇଛି ଦେଖିଲୁ । ମା ଗୋଡ଼ ଧୋଇ ଦେଲା । ଘର ଭିତରେ ନାନୀ ଛାତିରେ ଜାକି ଧରି କେତେ ଆଦର ସେଥର ନ କରିଛି- ମୋ ସୁନାଭାଇଟା ପରା ରାଗିବୁ ନାହିଁ । ମୁଁ ତୋ

ସଙ୍ଗେ ଖେଳୁଥିଲି ନା । କିଛି ହବନି ମ ! ଖରାରେ ଏମତି ଦଉଡ଼ିଲେ ଗୋଡ଼ ଟାଣ ହୁଏ । ସେଦିନ ଆଉ ଆଜି । କେତେ ତଫାତ୍ ସତେ ! କିଏ ତେବେ କାଢ଼ି ନେଇଛି ତାଠୁଁ ଅକୁଣ୍ଠ ମମତା ? ତାର ସ୍ୱାମୀ ? ତାର ପୁଅ ଝିଅ ? ନା ସମୟ ? ତା ପରେ ବହୁବାର ଖଇଫୁଟା ବାଲିରେ ଦଉଡ଼ା ହେଇଛି । କିନ୍ତୁ ଆଉ କେବେ କେହି ଗୋଡ଼ ଧୋଇ ଦେଇ ନାହାନ୍ତି କି ଛାତିରେ ଜାକି ସାଉଁଲେଇ ନାହାନ୍ତି । ମେ ମାସରେ ବାର୍ଷିକ ପରୀକ୍ଷା ସାରି ଘରକୁ ଫେରା - ଓଃ, ସେ କି ଯନ୍ତ୍ରଣା । ଖାଲି ଡେଇଁ ଡେଇଁ ଆସିବାକୁ ପଡ଼ିଛି ।

ସେମାନଙ୍କର କିନ୍ତୁ ସେତେବେଳେ ଯାହା କେଇପଦ ଶୁଷ୍କ ଆଶ୍ୱସ୍ତି ବାଣୀ- ପାଠ ପଢ଼ା ବଡ଼ ଦୁଃଖ, ପଶ୍ଚାନ୍ତେ ବଡ଼ ସୁଖ । କେଉଁ ଅନାଗତ, ଆବଷ୍ଟ୍ରାକ୍ଟ ଏକ ଅନୁଭୂତି ପାଇଁ ବହୁ ଗ୍ରୀଷ୍ମଋତୁରେ ଏଇଭଳି କସରତ୍ ଆଉ ତ୍ୟାଗ କରିବାକୁ ପଡ଼ିଛି । କିନ୍ତୁ ସେ ତ୍ୟାଗ କେବଳ ତ୍ୟାଗରେ ହିଁ ରହିଯାଇଛି ସବୁକାଳ । ସବୁଥର ସୁନାର ହରିଣଟିଏ ଦଉଡ଼ୁଛି । ଦୂରରେ । ଖୁବ୍ ଦୂରରେ । ଦଉଡ଼ । ଦଉଡ଼ ତା ପଛରେ । ସବୁ ଅନିଚ୍ଛା, ସବୁ ପୀଡ଼ା, ସବୁ ଯନ୍ତ୍ରଣାକୁ ଭୁଲିଯାଇ ଭବିଷ୍ୟତକୁ ଉଜ୍ଜ୍ୱଳ କରିବା ପାଇଁ ଅନ୍ଧାର ବର୍ତ୍ତମାନ ଭିତରେ ଏ ଦଉଡ଼ା ଅସରନ୍ତି । ଆଉ ଦୂରର ସେଇ ଝିଲିମିଲି, ସୁନାର ହରିଣ ବି ଅପହଞ୍ଚ । ତଥାପି ଏଇ ଦଉଡ଼ିବା ଭିତରେ କି ଏକ ଅନନୁଭୂତ ଆମେଜ ! ପୁରାଣର ନାୟକ ରାମଚନ୍ଦ୍ରଙ୍କର ପୁଂତ୍ୱ, ବୀରତ୍ୱ ଏବଂ ଆଦର୍ଶ ସବୁକିଛିର କେନ୍ଦ୍ର ଏଇ ସୁନାର ହରିଣ । ବସ୍ତୁତଃ ଜୀବନଟା ତାଙ୍କର ଆରମ୍ଭ ହିଁ ଏଇଠୁ । ସୀତା କିନ୍ତୁ ଥରେମାତ୍ର ମାଗିଥିଲେ ପ୍ରୀତିର ଉପହାର । ଜୀବନରେ କେବଳ ଥରଟିଏ । ଜୀବନର ଆରମ୍ଭ ସେଇଠି ଏବଂ ସେ ଆରମ୍ଭ ଶେଷହୀନ ।

ଜୀବନବ୍ୟାପୀ ସେଇ ହରିଣ ପଛରେ ଦଉଡ଼ା । ନିଭା କିନ୍ତୁ ଆଧୁନିକା କି ନା- ପ୍ରୀତିର ଅନ୍ୟ ନାମ - ସେମାନଙ୍କ ପାଇଁ - ଉପହାର ଏବଂ ଅଳି ହିଁ ପତ୍ନୀତ୍ୱର ପରମ ଅଳଙ୍କାର । ଏବଂ ଯେହେତୁ ଆଧୁନିକତାର ଏସବୁ ସୀମିତ ଓ ବିକ୍ଷିପ୍ତ, ତୁମ ପାଇଁ ଆରମ୍ଭ ଏକ ନୁହେଁ । ଆରମ୍ଭ ଅନେକ, ପୁଣି ପ୍ରତ୍ୟେକ ଆରମ୍ଭ ଶେଷହୀନ ଏବଂ ସୀମାହୀନ । ନିଭା ସେଦିନ କହିଲା- ହେଇ, ଶୁଣମ, ସୀମାଙ୍କର କୋଉଠୁଁ ରୋଜ ରୋଜ ଚମ୍ପାଫୁଲ ଆଣୁଛନ୍ତି । ଏଇଦିନେ ଚମ୍ପାଫୁଲଗୁଡ଼ାକର ସଞ୍ଜବେଳେ କି ବାସ୍ନା ମ ସତେ !

ନିଭା ତା'ପରେ ଡ୍ରେସିଂ ଟେବୁଲ ଉପର ଛୋଟ ଉସ୍‌ରୁ ପ୍ଲାଷ୍ଟିକ୍ ଫୁଲଟିଏ ନେଇ ତା ଗଭାର ବାଁ ପାଖରେ ଖୋଷିଦେଲା । ନିଭା ଅବଶ୍ୟ ଦୀର୍ଘ ଏବଂ ଘନକେଶୀ । ଟାସେଲ୍ କିମ୍ବା ବଲ୍‌ର ଆବଶ୍ୟକତା ତା'ର ଅନ୍ତତଃ ଏଯାଏ ପଡ଼ି ନାହିଁ । ଏଇ ଉତ୍ତପ୍ତ ଦିବସର ଶେଷ ଭାଗରେ ରମଣୀୟ ସନ୍ଧ୍ୟାର ପରିବେଶରେ ନିଭାର ଗଭାରେ ସଦ୍ୟ ବିକଶିତ ଚମ୍ପକର ମାଳାଟିଏ- ଉପଭୋଗ୍ୟ ନିଶ୍ଚୟ- ପିଓର୍‌ଲି କ୍ଲାସିକ୍ । ଆସେମ୍ବ୍ଲି ହଲର ସାମ୍ନା ଲନ୍‌ର କେଉଁ କୋଣରେ କେଜାଣି ଲୁଚିଛପି ଫୁଟେ ଏଇଦିନେ ଚିନିଚମ୍ପା - ଅଫିସଫେରନ୍ତି ତା'ର ସେଇ ଗନ୍ଧରେ ଅନେକଟା ଆର୍ଦ୍ରତା ଯେ ଅନୁଭବ କରି ନ

ହେଇଛି ନୁହେଁ । କିଛି କିଛିଟା ଏଇମିତି ଆର୍ଟିଷ୍ଟିକ୍ ଭିଜନ୍ ଏବଂ ପ୍ଲାନ୍ ବି କରାହେଇଛି ତା'ପଛେ ପଛେ । କିନ୍ତୁ ତା'ର ବାସ୍ତବତା ପାଇଁ ରୀତିମତ ଦଉଡ଼ ହେଇଛି ଖରାରେ । ଏ.ଜି. ଅଫିସରୁ temple ଏବଂ ସେଠୁ ପୁଣି କେଦାରଗୌରୀ । ଥରେ ନୁହେଁ, ଅନେକ ବାର । କିଛି ଦିନ ପରେ କ୍ୱାର୍ଟର୍ସ ଭିତର କୋର୍ଟ୍ୟାର୍ଡ଼ରେ କିଛି ସଂଖ୍ୟକ ମଲ୍ଲିକା କୁସୁମର ଆବିର୍ଭାବରେ ଏଥିରୁ ଅବଶ୍ୟ ତ୍ରାହି ମିଳିଥିଲା । କିନ୍ତୁ ତା'ପରେ ନିଭାର ରୁଚି ପରିବର୍ତ୍ତିତ ହୋଇଥିଲା ଖଣ୍ଡଗିରି ଫାର୍ମର ସପେଟା ଏକ କଦଳୀ ନିକଟକୁ ଏବଂ ଶେଷରେ କଥାଟା ସତରେ ବଳି ପଡ଼ିଥିଲା କୌଶଲ୍ୟାଗଙ୍ଗର ଜିଅନ୍ତା ମାଛ ପାଇଁ- ତମର ଗୋଟାଏ ଯୋଗାଡ଼ ବୋଲି କିଛି ନାହିଁ । ମହାନ୍ତିବାବୁ ଅଧବେଳେ ଯୋଗାଡ଼ କରୁଛନ୍ତି କୌଶଲ୍ୟାଗଙ୍ଗର ତଟକା ରୋହି କି ମିରା । କାତିଟାମାନ ରୁପାଚକି ପରି ଚିକ୍ ଚିକ୍ କରୁଛି । ଜିଅନ୍ତା ଜିଅନ୍ତା ଆଖି । ପାଟି ପାକୁ ପାକୁ କରୁଥିବ ଏଯାକେ । କାଟିଦେଲେ ରକ୍ତ ଧାର ଲାଗିଯିବ । ଆଉ ତୁମର ସବୁବେଳେ କୋଉଠିକାର ବରଫଦିଆ ସିଠା ମାଛ- ମୁର୍ଦ୍ଦାରିଆ, ମୁର୍ଦ୍ଦାରିଆ । ଦେଖିଲେ ଘୃଣା ଲାଗେ । ସେଗୁଡ଼ାକର କ'ଣ ଟେଷ୍ଟ ବୋଲି କିଛି ଥାଏ । ଅଥଚ ସେଦିନ କୌଶଲ୍ୟାଗଙ୍ଗର ତଟକା ରୋହି ପାଇଁ କି ଦଉଡ଼ା ନ ହେଇଛି ? ମେ ମାସର ସେ ଯେଉଁ ଖରା ! ସାରା ରବିବାରଟାର ସବୁ ବିଶ୍ରାମକୁ ଜାଳିପୋଡ଼ି ଦେଇ ପହଞ୍ଚିଲା ବେଳକୁ କ'ଣ ନା କୋଉଠିକାର ଜଣେ କଣ୍ଟ୍ରାକ୍ଟର ସବୁଗୁଡ଼ା ମାଛ କିଣି ନେଇଛନ୍ତି ଡିପାର୍ଟମେଣ୍ଟର ଉପରବାଲାଙ୍କୁ ସବୁ ବିଷୁବ ଭେଟି ଦେବେ ବୋଲି । ନିଭା ନିକଟରେ ପରାଜୟର ଗ୍ଳାନି ଅପେକ୍ଷା ସେଦିନର ଦଉଡ଼ାଟା ଅବଶ୍ୟ ଢେର୍ ବଳିଯାଇଥିଲା । କିନ୍ତୁ ଏ ଦଉଡ଼ା କାହାପାଇଁ ? ପାଟପୁର ବସ୍‌ଷ୍ଟାଣ୍ଡଠାରୁ କୌଶଲ୍ୟାଗଙ୍ଗ ପର୍ଯ୍ୟନ୍ତ ଜୀବନର ବହୁ ସ୍ମୃତ ବିସ୍ମୃତ ଗ୍ରୀଷ୍ମରତୁ ଏବଂ ଜୀବନବ୍ୟାପୀ ଏ ଦଉଡ଼ାର ଅବକାଶ କାହିଁ ? ଅତୀନ୍ ହୁଏତ ସେଦିନ ଠିକ୍ କହିଥିଲା- ଏ କେବଳ ଏକ ପୁନରାବୃତ୍ତି । ବର୍ଷାର ଆର୍ଦ୍ରତା କୁହ, ନାରୀର ସିକ୍ତତା କୁହ - ସବୁ କ୍ଷଣିକ ବିଶ୍ରାମ, ପୁଣି ଦିବସବ୍ୟାପୀ ଦଉଡ଼ । କ୍ଷଣିକ ବିଶ୍ରାମ, ପୁଣି ବର୍ଷବ୍ୟାପୀ ଦଉଡ଼ । କ୍ଷଣିକ ବିଶ୍ରାମ ପୁଣି ଜୀବନବ୍ୟାପୀ ଦଉଡ଼ । ଏବଂ ପୁନଶ୍ଚ, ପୁନଶ୍ଚ.. ଓଃ କି ପ୍ରଚଣ୍ଡ ଖରା ସତେ !

ଆକାଶର ଚାରିଆଡୁ ଅସଂଖ୍ୟ ତପ୍ତ ଶଳାକା ବିନ୍ଧି ହେଇଯାଉଛି ପୃଥିବୀ ଦିହରେ । ବିମଳବାବୁଙ୍କୁ ଲାଗିଲା ସେ ଯେପରି ଧଇଁସଇଁ ହେଇ ଦଉଡୁଛନ୍ତି । ବାହାରର ମେନ୍‌ରୋଡ଼ଟା ଲମ୍ବିଯାଇଛି ଦୂରକୁ, ଦୂରକୁ । ପିଚୁଢଳା ରାସ୍ତାଟା ଖରାରେ ଚିକ୍ ଚିକ୍ କରୁଛି ଓଲଟି ଶୋଇଥିବା ଗୋଟାଏ ଦୁର୍ଦ୍ଦାନ୍ତ ଅଜଗରର ପେଟ ପରି ଏବଂ ଦୂରରେ ହରିଣଟାଏ ଦଉଡ଼ି ଦଉଡ଼ି ଅଦୃଶ୍ୟ ହେଇଯାଉଛି ଯେଉଁଠି ରାସ୍ତାଟା ମିଶିଯାଇଛି ଚକ୍ରବାଳ ଦିହରେ । ଚତୁର୍ଦ୍ଦିଗ ବୃକ୍ଷହୀନ, ଲତାହୀନ ଏବଂ ପୃଥିବୀର ବ୍ୟବଧାନକୁ ପୂର୍ଣ୍ଣ କରିଛି କେବଳ ଉତ୍ତପ୍ତ, ନିଥର ବାୟୁ ।

ବିମଳବାବୁ ହଠାତ୍ ଉଠିପଡ଼ି ଝରକାଟା ବନ୍ଦ କରିଦେଲେ ଏବଂ ମନକୁ ମନ କେଇବାର ଆବୃତ୍ତି କଲେ - ଦଉଡ଼ ନା ବଡ଼ ଖରା, ହରିଣ ନ ଦିଏ ଧରା... ।

[୧୯୭୩]

# ଅନ୍ୟ ସୀମାନ୍ତ

ସୋମନାଥଙ୍କର ପାଦ ଦୁଇଟା ଅସ୍ୱାଭାବିକ କ୍ଷିପ୍ର ହେଇ ଉଠିଥିଲା । ଆକାଶର ଅପରାଜିତା ଆସ୍ତରଣରେ ଗୋଧୂଳିର ମ୍ଳାନ ଛିଟା ଲାଗିବାକୁ ତଥାପି ଥିଲା ଅନେକ ବାକି । କିନ୍ତୁ ହଠାତ୍ ଯେମିତି ସୋମନାଥଙ୍କର ମନେ ହେଇଥିଲା, ଗୋଟାଏ ଅପ୍ରାକୃତିକ ଗତିରେ ହୁଏତ ସବୁକିଛିର ପରିବର୍ତ୍ତନ ହୋଇଯିବ । ହୁଏତ ସୂର୍ଯ୍ୟଙ୍କର ଉପସ୍ଥିତିକୁ ଅବିଶ୍ୱାସ କରି ପକ୍ଷୀମାନେ ଫେରିଆସିବେ ନୀଡ଼କୁ । ପୁଷ୍କରିଣୀରେ ପଦ୍ମସବୁ ମୁଦି ହେଇଯିବେ ଏବଂ ଜହ୍ନିଲତା ପୁଷ୍ପିତା ହେଇ ଉଠିବ ଅଥଚ ଚନ୍ଦ୍ର ଉଇଁବ ନାହିଁ କି ଗ୍ରାମ୍ୟବଧୂ ପାଣି ପାଇଁ ଘରୁ ବାହାରିବ ନାହିଁ । ଗାଈ ଗୋଠ ଫେରିବ ନାହିଁ କି ଗାଈଆଳ ପିଲାର କୁହାଟ ଶୁଭିବ ନାହିଁ । ଦୂର ଗାଁର ମନ୍ଦିରରେ ଆରତିର ଘଣ୍ଟା ବାଜିବ ନାହିଁ କି ଭାଗବତ ଘରେ ପିଲାଏ ଗାଇବେ ନାହିଁ, ସନ୍ଧ୍ୟାଦୀପ ନମୋଽସ୍ତୁତେ... ।

ସୋମନାଥ ନିଜକୁ ଗୋଟେଇ ଆଣିବାର ଆପ୍ରାଣ ଚେଷ୍ଟା କରୁଥିଲେ । ତାଙ୍କର ବିଶ୍ୱାସ-ଆଦ୍ୟ ଯୌବନର ଶେଷ ପର୍ଯ୍ୟାୟରୁ ଉତ୍ତର ଯୌବନ ପର୍ଯ୍ୟନ୍ତ ଜୀବନର ଯେଉଁ ଦୁଇ ମୂଲ୍ୟବାନ୍ ଦଶନ୍ଧିକୁ ସେ ହଜେଇ ଦେଇଥିଲେ ଗବେଷଣା, ପୁସ୍ତକାଗାର ଏବଂ ଜିଜ୍ଞାସୁ ନରନାରୀମାନଙ୍କର ଗହଣରେ, ତାକୁ ନିଶ୍ଚିତ ଭାବେ ଫେରି ପାଇବେ ସହରଠାରୁ ଦୂରରେ ଅନେକ ଦୂରରେ- କେଉଁ ଦୂର ପାହାଡ଼ ତଳର ସବୁଜ ବନାନୀ ଘେରା ଗାଁରେ । ଯେଉଁଠି ସୃଷ୍ଟିର ପ୍ରଥମ ଉଷାର ଅରୁଣିମା ତଥାପି ଲାଗି ରହିଥିବ ତା'ର ଅନୂଢ଼ା କୁମାରୀର ନିଷ୍କପଟ ଲାବଣ୍ୟରେ, ବାୟୁରେ ଥିବ ପ୍ରଥମ ଆଷାଢ଼ର କଦମ୍ବ-ରୋମାଞ୍ଚ, ପାହାଡ଼ି ନଈର ସର୍ପିଳ ଗତିରେ ଜୀବନସ୍ରୋତର ଆଳସ୍ୟ ବିଳାସ, ପଦ୍ମ-ପୋଖରୀର ଅତଳ ଜଳରେ ବିଗଳିତ କରୁଣାର ଶୀତଳତା, ସନ୍ଧ୍ୟାଦୀପର ଉଦ୍ଦୀପିତ ମମତାରେ ଅକୁଣ୍ଠ ଉଷ୍ଣତା ଏବଂ ପକ୍ଷୀର କାକଳିରେ ସୃଷ୍ଟିର ପ୍ରଥମ ସମ୍ମୋହନୀ ମୂର୍ଚ୍ଛନା... ଆଉ ମାଟିରେ ? ପ୍ରଥମ ଭୂମିଷ୍ଠ ହେବାର ସେହି ଅନାସ୍ୱାଦିତ ଆଦିମ ଗନ୍ଧ ଏବଂ ଚୁମ୍ବକସ୍ପର୍ଶ...

ଆଃ, ସୋମନାଥ ହଠାତ୍ ଅଟକିଯାଇ ତଳୁ ଆଞ୍ଜୁଳାଏ ମାଟି ଉଠାଇ ନେଇ ଖୁବ୍ ଜୋର୍‌ରେ ଦମକାଏ ଶୁଙ୍ଘି ଦେଇ ଫୋପାଡ଼ି ଦେଲେ ଘୃଣାରେ । ଆଶୁ ସଂକ୍ରାମକ ବ୍ୟାଧିର କୀଟାଣୁ ପରି ସେହି ମାଟିର ଗନ୍ଧ ଭରିଦେଇଗଲା ତାଙ୍କର ଶରୀର, ମନ ଓ ପ୍ରାଣର ପ୍ରତିଟି କୋଷରେ, ପ୍ରତିଟି ସ୍ନାୟୁରେ ଏବଂ ପ୍ରତିଟି ସ୍ପନ୍ଦନରେ ବ୍ୟର୍ଥତାର ବେଦନା... ।

ଏମିତି ଗୋଟାଏ ଗାଁ ଖୋଜୁ ଖୋଜୁ ମନେ ପଡ଼ିଥିଲା କମଳପୁର । ସୋମନାଥଙ୍କର ବହୁଦିନର ପରିଚିତ, କିନ୍ତୁ ଅଧୁନା ପ୍ରାୟ-ବିସ୍ମୃତ ତିନୋଟି ଦଶନ୍ଧିର କବର ତଳୁ । ସେଇ ଗାଁର ଭୂଗୋଳକୁ ଥରେ ପୁନରଙ୍କିତ କରିଦେଇଥିଲେ ସୋମନାଥ ମନେ ମନେ । ବେତବଣି ବସ୍‌ଷ୍ଟାଣ୍ଡଠାରୁ ପ୍ରାୟ ଚାରି ମାଇଲ ଚଲାବାଟ । ଗହୀର ପାଟ ଭିତରେ କେବେ କେଉଁଠି ସିଧାସଳଖ ଅପନ୍ତରା ସରୁ ରାସ୍ତା ତ କେବେ କେଉଁଠି ବୁଲାଣି ହିଡ଼ ଦୁଇ ପାଖରେ ଗହଳ କିଆବୁଦା ସବୁ - ଆଧୁନିକ ବିଜ୍ଞାନର ଅସ୍ପଷ୍ଟ ବୁଢ଼ୀମା କାହାଣୀର ରହସ୍ୟମୟ ଗନ୍ତାଘର ଅଥବା ଗୋଟିକିଆ ତୀକ୍ଷ୍ଣ କଣ୍ଟକମୟ ଗୋହିରା ଗଛର ଅଶରୀରୀ ଛାୟା । ପରେ ପରେ ଅଠରବାଙ୍କି ନଈର ବ୍ରୀଡ଼ା-କୁଣ୍ଠିତ ଅପ୍ରଶସ୍ତ ଅଥଚ ଗଭୀର ବିସ୍ତାର । କୂଳେ କୂଳେ ଯା'ର ସବୁଜ ତଣ୍ଡିବଣ । ଖରାଦିନେ ଏଇ ନଈର ଶୁଖିଲା ଶଯ୍ୟାରେ ଶାମୁକା, ଗେଣ୍ଡା, ଖୋଳପାର ମୁକ୍ତା ଧବଳିତ, ବାଲୁକାର ମସୃଣ ଆସ୍ତରଣ ଡେଇଁଗଲେ ସେପାଖରେ ଖଣ୍ଡେ ଦୂର ଛାଡ଼ି ନିଘଞ୍ଚ ତୋଟା । ବାଉଁଶ, ଆମ୍ବ, ପଣସ ଆଉ ପୋଲାଙ୍ଗର ସବୁଜ ଘନ ଭିତରେ କେଉଁଠି କେଉଁଠି ବେତଧାଡ଼ିର ନିରନ୍ଧ୍ର ବିସ୍ତାର ।

ଏଇ ତୋଟା ପରେ ନୀଳକଇଁ ପୋଖରୀ । ପୋଖରୀ ହୁଡ଼ାରେ ଝଙ୍କାଳିଆ ବୁଢ଼ା ବରଗଛର ଛାୟା । ତଳେ ପଥର ତିଆରି ଶିବ ମନ୍ଦିର । ତା'ପରେ କମଳପୁରର ବାରଭାଗ ଶାସନ । ମଝି ଦାଣ୍ଡ ଦୁଇ ପଟେ ଦୁଇ ଧାଡ଼ି ଲଗାଲଗି ଘର ଏବଂ ଦୁଇ ଧାଡ଼ି ଘର ଆଗରେ ଦୁଇ ଧାଡ଼ି ନଡ଼ିଆଗଛ । ପଥର ତିଆରି ଉଞ୍ଚା ଉଞ୍ଚା ପିଢ଼ାରେ କୋଟିକମକରା ପୁରୁଣା ଶାଳଖୁଣ୍ଟ ଉପରେ ଚାଳ ଶେଣି । ତା ଉପରେ ମୋଟାକରି ନଡ଼ାଛିଆଣି ଚାଳ । କାନ୍ଥରେ ପିଠୋଉର ଝୋଟି । ଦାଣ୍ଡ ମଝିରେ କୂଅ ।

ଏଇ ଶାସନରେ ଭୋଳି ଆଚାର୍ଯ୍ୟ ଥିଲେ ସୋମନାଥଙ୍କର ସ୍ୱର୍ଗତ ମାଆଙ୍କର ମାମୁ । ଥରେ ନୁହେଁ ବହୁବାର ଆସିଛନ୍ତି ମାଆଙ୍କ ସାଙ୍ଗରେ ସେଇ ଗାଁକୁ, ବିଶେଷକରି ଖରାଦିନରେ । ବସ୍‌ଷ୍ଟାଣ୍ଡଠାରୁ ଆସିବାକୁ ହୁଏ ଶଗଡ଼ରେ ଅଠରବାଙ୍କି ନଈକୂଳ ଯାଏ । ସେଠୁ ତ ଗାଁ । ମନେ ପଡ଼ିଥିଲା ସେହି ପୁରୁଣାଦିନର ଘଟଣାସବୁ ।

ଭୋଳି ଆଚାର୍ଯ୍ୟଙ୍କର ଗହମ ରଙ୍ଗର ବର୍ତ୍ତୁଳ ଦେହ ସାଙ୍ଗକୁ ଚିକ୍‌କଣିଆ ଚନ୍ଦା ମୁଣ୍ଡର ମଝି କପାଳରେ ବ୍ରିଟିଶ ଅମଳର ଚାନ୍ଦି ଅଧୁଲି ପରି ଚନ୍ଦନ ଟିକା । ଅଧା ପାଚିଲା ଗହଳିଆ ଆଖିପତା ତଳେ କୁହୁକଭରା ଆଖିର ଉଜ୍ଜ୍ୱଳ ଚାହାଣି ସାଙ୍ଗକୁ ଅଧା ପାକୁଆ ପାଟିରେ ପାଟିଏ ହସ, ଆଉ ହୃଦୟର ସମସ୍ତ ଆର୍ଦ୍ରତାର ନିର୍ଯାସରେ ପ୍ରଲେପିତ ସେଇ ସମ୍ବୋଧନ-

- ମା ହେମ, ଆଇଲୁ କିରେ ?

ତା'ପରେ ମା' ର କାନ୍ଦଣା ଅବାରିତ ସାବଲୀଳ... ଭୋଳି ଆଚାର୍ଯ୍ୟଙ୍କର ସାଶ୍ରୁଳ ଆଲିଙ୍ଗନ ଆଉ ତାଙ୍କ ନବାଗତା ପୁତ୍ରବଧୂର ସସ୍ମିତ ଅଭିନନ୍ଦନ ସହିତ ଏକମାତ୍ର ପୁତ୍ର ମକରନ୍ଦର ଅଭିମାନଭରା ଆପତ୍ତି ଓଜର...

ହେମନାନୀ ଆମକୁ ଭୁଲିଗଲା ।

ସବୁ ଯେମିତି ଫଟୋଗ୍ରାଫିକ୍ ସ୍ମୃତିରେ ଅବିକଳ ଭାସି ଉଠୁଛି ସୋମନାଥଙ୍କର ।

ତା'ପରେ ବାଡ଼ିରୁ ସଦ୍ୟ ତୋଳା ହୋଇଥିବା କଳା ମଚମଚ ବାଇଗଣଭଜା ସାଙ୍ଗକୁ ଆମ୍ବ, ବଡ଼ି ଚଟଣି । ମୋଟା ମୋଟା କଂସାରେ ବଢ଼ା କଇଁଫୁଲିଆ ପଖାଳ । ସେ ସ୍ୱାଦ - ସେ ଗନ୍ଧ - ସେ ସ୍ପର୍ଶ - ଏସବୁ କ'ଣ ସ୍ୱପ୍ନ ?

ତା'ପରେ ଚାଲେ ଖେଳାବୁଲା । ଭୋଳିଅଜାଙ୍କ ସାଙ୍ଗେ ଯଜମାନ ଘରକୁ ଯିବା, ମକରାମାମୁ ସାଙ୍ଗେ ଜଙ୍ଗଲୀଝାଟିରୁ କାଇଁଚ କୋଳି ତୋଳା, ବଣି ଧରା ଆଉ ପୋଖରୀରୁ ପଦ୍ମପୁଷ୍କର କଢ଼ା । ରାତିରେ ଦାଣ୍ଡ ପିଣ୍ଡାରେ ଶୋଇ ଶୋଇ କାହାଣୀ ଶୁଣା । ନଡ଼ିଆ ବାହୁଙ୍ଗାର ଫାଙ୍କରେ ଜହ୍ନ ଆଲୁଅ ପଡ଼େ ଚିକ୍‌ମିକ୍ ହୋଇ । ଆଉ ଥିରି ଥିରି ପବନରେ ବାହୁଙ୍ଗା ହଲିଯାଏ ଫିରିଫିରି । ନିଦ ଆସିଯାଏ କେତେବେଳେ ଜାଣି ହୁଏନି । ସକାଳ, ଦ୍ୱିପହର, ସଞ୍ଜ ଆଉ ରାତି ସବୁ ଆସନ୍ତି ଏବଂ ଯାଆନ୍ତି । ସୋମନାଥଙ୍କର ଧାରଣାରେ ସେଇ ମୁହୂର୍ତ୍ତ ସବୁ ଆଙ୍କି ଦେଇ ଯାଆନ୍ତି ଗୋଟିଏ ଅପରିବର୍ତ୍ତନର ଚିରନ୍ତନ ଶୈଶବ ଏବଂ ଅମଳିନ ଆନନ୍ଦର ଭାସ୍ୱର ସ୍ୱାକ୍ଷର ।

ସେ କଣ ଜାଣିଥିଲେ ଜୀବନରେ ପରିବର୍ତ୍ତନ ଆସେ ? ଶୈଶବ ପରେ ଆସେ ଯୌବନର ଯନ୍ତ୍ରଣା ? ଆସେ ପୁଣି ବାର୍ଦ୍ଧକ୍ୟ ଏବଂ ସର୍ବୋପରି ମୃତ୍ୟୁ । ସେ ଜାଣିଥିଲେ ଭୋଳିଅଜା ସବୁଦିନେ ଅଜା ହୋଇ ଅଛନ୍ତି ଓ ଥିବେ । ମକରାମାମୁ ସବୁଦିନେ ସେହିପରି ସୁଶ୍ରୀ, ତରୁଣ । ବହୁ ମୃତ୍ୟୁ ସେ ଦେଖିଛନ୍ତି, କିନ୍ତୁ ଭାବିଛନ୍ତି ମୃତ୍ୟୁ ଯେପରି ସେହିମାନଙ୍କ ପାଇଁ, ଯେଉଁମାନେ ମରିଗଲେ । ଭୋଳିଅଜା, ମକରାମାମୁ, ମାଆ, ବାପା ଆଉ- ଆଉ ସେ ନିଜେ ଯେପରି ଗୋଟେ ଭିନ୍ନ କେଟେଗୋରି । କିନ୍ତୁ -କିନ୍ତୁ ଭୋଳିଅଜା, ମାଆଁ ଆଉ ବାପାଙ୍କୁ ବିଦାୟ ନେବାକୁ ପଡ଼ିଥିଲା ଅନ୍ୟମାନଙ୍କ ପରି । ସେତେବେଳେ ସେ ଆମେରିକାର କର୍ଣ୍ଣେଲ ବିଶ୍ୱବିଦ୍ୟାଳୟରେ- ସେଠାରେ ତାଙ୍କର ପନ୍ଦର ବର୍ଷର ପ୍ରାଜ୍ଞିକ ଏବଂ ସାମାଜିକ ଅଭ୍ୟୁତ୍‌ଥାନର ସୁଅ ମୁହଁରେ ତଦାନୀନ୍ତନ ଅନାବଶ୍ୟକ ଅନେକ ପ୍ରିୟ ପରିଜନ ଭାସିଯାଇଥିଲେ ଅପାଂକ୍ତେୟ ପାଚିଲା ପତ୍ରଟି ମାନ ପରି-

ଅନେକ ଦିନ ପରେ ଆମେରିକାରୁ ଫେରିଆସିବା ପରେ ପୁଣି ଜୀବନର ଅନ୍ୟ ଏକ ମୋଡ଼ରେ ହଠାତ୍ ମନେ ପଡ଼ିଥିଲା କମଳପୁର-

ଗୋଟିଏ ବ୍ରିଫକେଶ୍ ମାତ୍ର ନେଇ ଚଟାପଟ୍ ବିଶିଷ୍ଟ ସେଇ ଅଭିଯାନ । କିନ୍ତୁ ବେତବଣି ବସ୍‌ଷ୍ଟାଣ୍ଡରେ ପହଞ୍ଚିବା ପରେ ତାଙ୍କୁ ଲାଗିଲା ସେ ବାଟବଣା ହୋଇଯାଇଛନ୍ତି । ବେଶ୍ ଗୋଟାଏ ମିନି ମାର୍କେଟ । ଷ୍ଟେସନାରୀଠାରୁ ପରିବା ପର୍ଯ୍ୟନ୍ତ ହରେକ୍‌ମାଲର ଦୋକାନସବୁ ଆଜବେଷ୍ଟସ୍ ଘରଠାରୁ ଉଠା କେବିନ୍ ପର୍ଯ୍ୟନ୍ତ ଭରିଯାଇଛନ୍ତି । ଦି'ତିନିଟା ଷ୍ଟେରିଓଫୋନିକ୍ କ୍ୟାସେଟ୍ ପ୍ଲେୟାରର ଏମ୍ପ୍ଲିଫାୟାରରୁ ଅନବରତ ବାହାରୁଛି ସାଲବେଗଙ୍କ ଭଜନଠାରୁ କାବାରେ ଡାନ୍‌ସର ୱାଇଲଡ ମ୍ୟୁଜିକ୍ ପର୍ଯ୍ୟନ୍ତ ଯାବତୀୟ ରାଗରାଗିଣୀର ସଦର୍ପ ଶ୍ରବଣ ଯାତ୍ରା...

ଆଉ ଗାଆଁ କଡ଼କୁ ଯେଉଁଠୁ ବାଙ୍କି ପାଟ ଭିତରେ ଚାଲିବାକୁ ପଡ଼େ କମଳପୁରକୁ- ଗୋଟାଏ ନାଲିଗୋଡ଼ିର ବେଶ୍ ପ୍ରଶସ୍ତ ରାସ୍ତା ଲମ୍ବିଯାଇଛି ଖୁବ୍ ଦୂରକୁ । ସୋମନାଥ ସନ୍ଦେହରେ ସେଇଠି କାହାକୁ ପଚାରିଥିଲେ- ବେତବଣି ବସ୍‌ଷ୍ଟାଣ୍ଡ ତ ? ଏକ କୌତୁକଭରା ଚାହାଣିରେ ଭଦ୍ରଲୋକଜଣକ କହିଥିଲେ, ହଁ- କେଉଁଠିକି ଯିବେ ?

- କମଳପୁର ।

- ହଁ, ଏଇ ରାସ୍ତା । ଏଇନେ ପାଟଶାଣୀ ଟ୍ରେକର ଯିବ ବଡ଼ଶାସନ । ଆପଣ ସେଥିରେ ଯାଇ ଅଠରବାଙ୍କି ପୋଲ ପାଖରେ ଓହ୍ଲେଇ ସିଧା କମଳପୁର ଫେକ୍‌ଟେରୀ ପର୍ଯ୍ୟନ୍ତ ଚାଲିଯିବେ । ଫେକ୍‌ଟେରୀ ଘରକୁ ତ ଲାଗିଛି ଗାଁଟା ।

ବଡ଼ଶାସନ ପର୍ଯ୍ୟନ୍ତ ଟ୍ରେକର ଯିବାଠାରୁ ଆରମ୍ଭ କରି ଅଠରବାଙ୍କି ପୋଲ ଆଉ କମଳପୁର ଫେକ୍‌ଟେରୀ- ଏସବୁ ସୋମନାଥଙ୍କୁ ଲାଗିଲା ଯେମିତି ଅଜଣା କେଉଁ ଭାଷାର ଅଶୁଣା କେଉଁ ଶବ୍ଦ ପରି । ଭଦ୍ରଲୋକଜଣକ ବିସ୍ମିତ ହୋଇ ପଚାରିଥିଲେ, ଆପଣ କ'ଣ ସେଠି ନୂଆ ? କୁଆଡ଼େ ଆସିଲେ ? କାହାଘରକୁ ଯିବେ ? ସୋମନାଥ ଏସବୁ ପ୍ରଶ୍ନର ଉତ୍ତର ଦେବା ପୂର୍ବରୁ ଶୁଣିଥିବା ଶବ୍ଦଗୁଡ଼ିକର ଅର୍ଥ ସନ୍ଧାନ କରିବାରେ ହଜି ଯାଇଥିଲେ ।

ଟ୍ରେକର ଆସିଥିଲା । ସୋମନାଥ ଟ୍ରେକରରେ ବସିଥିଲେ । କିନ୍ତୁ ତାଙ୍କୁ ଲାଗିଥିଲା ତାଙ୍କର ଅନିଚ୍ଛାସତ୍ତ୍ୱେ ତାଙ୍କୁ ଜବରଦସ୍ତ ନିଆଯାଉଛି କେଉଁ ଗୋଟାଏ ଅଜଣା ଅଶୁଣା ସ୍ଥାନକୁ । ମଝିରେ ଶୁଣିଥିଲେ କେବଳ ସହଯାତ୍ରୀମାନଙ୍କର କଥୋପକଥନରୁ କେତେଟା ନାଁ । ଶିଳ୍ପ ମନ୍ତ୍ରୀ ବିଜନ୍ ରାୟ ଏବଂ ଶେଠ୍ ବନ୍‌ବନ୍‌ବାଲାଙ୍କର ଭୂୟସୀ ପ୍ରଶଂସା । ଅଠରବାଙ୍କି ପୋଲ ପାଖରେ ଓହ୍ଲାଇ ସେ ଥରେ ଚାରିଆଡ଼କୁ ସଂଶୟପୂର୍ଣ୍ଣ ଚାହାଣିରେ ଚାହିଁଥିଲେ । ଏକଦା ସେଇ କ୍ଷୀଣାଙ୍ଗୀ ନଦୀତଟରେ ସବୁଜ ତଣ୍ଡିବଣ ନିଶ୍ଚିହ୍ନ ହୋଇଯାଇଛି । ବଦଳରେ କୂଳେ କୂଳେ ବଢ଼ି ଉଠିଛି ଅସୁମାରି ଝୁପୁଡ଼ି, ଆଉ କମଳପୁରର ସବୁଜ ଘନ ତୋଟାର ନୀଳକଇଁ ପୋଖରୀ ସ୍ଥାନରେ ଏକ ମଧ୍ୟମ ଧରଣର- ରିଫ୍ରେକ୍‌ଟୋରୀର ବାସ୍ତବବାଦୀ ଯାନ୍ତ୍ରିକ ପ୍ରତିଷ୍ଠା- ଦେଶର ଆର୍ଥିକ, ନୈତିକ, ସାମାଜିକ ଅଭ୍ୟୁଦ୍‌ଥାନର ଅନ୍ୟତମ ଆଭିନିଉ ।

ସୋମନାଥଙ୍କୁ ଲାଗିଲା ଯେପରି ଅଠରବାଙ୍କି ନଈ ଅକସ୍ମାତ୍ ଗଣଧର୍ଷଣର ଶିକାର ହୋଇ ମୁମୂର୍ଷୁ ହୋଇପଡ଼ିବା ପରେ ଆପ୍ରାଣ ଚେଷ୍ଟା କରୁଛି ଜୀବନର ଏଇ ନୂତନ ଦିଗ୍‌ବଳୟ ସହିତ ନିଜକୁ ଖାପଖୁଆଇ ନେବା ପାଇଁ । କୁଣ୍ଠିତ ପଦରେ ସୋମନାଥ ଆଗେଇଥିଲେ ଫ୍ୟାକ୍ଟ୍ରିର ବାଉଣ୍ଡାରି ୱାଲ ଧାରେ ଧାରେ । ତାପରେ ଆବିଷ୍କାର କରିଥିଲେ ଏଇ ଯାନ୍ତ୍ରିକ ପ୍ରତିଷ୍ଠାର ପଟ୍ଟଭୂମିରେ କମଳପୁରର ବାରଭାଗ ବ୍ରାହ୍ମଣଶାସନକୁ ଏକ ଅତିକାୟ ଗ୍ରନ୍ଥର ଅବହେଳିତ ଆପେଣ୍ଡିକ୍ସପରି ।

ଶାସନର କିଛିଟା ଦର୍ଶନୀୟ ପରିବର୍ତ୍ତନ ଘଟିଥିଲା । ଦୁଇ ତିନିଟା ଆର.ସି.ରୁଫ. । ସେଥିରୁ ଗୋଟାଏ ଦୋତାଲା । ଆଉ କେତେଟା ଆଜ୍‌ବେଷ୍ଟସ୍, କେତେଟା ଟାଇଲ୍ ଛପର । ଦାଣ୍ଡର କୂଅ ବଦଳରେ ଦୁଇଟା ଟ୍ୟୁବ୍‌ୱେଲ । ସ୍ୱର୍ଗତ ଭୋଳି ଆଚାର୍ଯ୍ୟଙ୍କ ଘର ଚିହ୍ନିବାରେ ବିଶେଷ କଷ୍ଟ ହେଲା ନାହିଁ ସୋମନାଥଙ୍କୁ । ଇତିମଧ୍ୟରେ ଘରଟା ଟାଇଲ୍ ଛପର ହୋଇଛି । ମାଟି କାନ୍ଥ ବଦଳରେ ପକ୍କା କାନ୍ଥ । ପିଣ୍ଡାଟା ସେହିପରି ପଥରବନ୍ଧା ହୋଇ ରହିଛି । ଝରକା ଲାଗିଛି ଦୁଇଟା ।

ଏକ ଅପରାଧୀର ଶଙ୍କିତ ମନ ନେଇ ସେ ଧୀରେ ଧୀରେ ଉଠିଥିଲେ ଉପରକୁ ଏବଂ କ'ଣ ବୋଲି ଡାକିବେ ଭାବି ନ ପାରି ହଠାତ୍ ହୋଇଯାଇଥିଲେ ନୀରବ । ଅନ୍ୟ ଦିନ ହେଇଥିଲେ ଏଠି ସେଠି ଉଙ୍କି ମାରିଥାନ୍ତା କେତୋଟି ମୁହଁ । ସଙ୍କୋଳା-ସଙ୍କୋଳି ଭାବ, ଭଲ-ମନ୍ଦ ପ୍ରଶ୍ନବାଚୀ । ଆଜି କିନ୍ତୁ ତାଙ୍କର ଉପସ୍ଥିତି ଥିଲା ଯେମିତି ଅବାଞ୍ଛିତ, ଅନପେକ୍ଷ, ଦୈନନ୍ଦିନ । ତାଙ୍କ ଠିଆ ହେବା ଭିତରେ ସେ ଭୁଲିଯାଇଥିଲେ କବାଟ ବାଡ଼େଇବାକୁ । କିଛି ସମୟ ପରେ ପିଲାଟିଏ ଆସି ହଠାତ୍ ପଚାରିଥିଲା- କାହାକୁ ଖୋଜୁଛ ? କ'ଣ ଭଡ଼ାଘର ଦରକାର ! ଆମର ଭଡ଼ାଘର ନାହିଁ । ତା'ପରେ ହଠାତ୍ ଦରଜାଟା ବନ୍ଦ କରିଦେଇ ପିଲାଟି ଚାଲିଯାଇଥିଲା ଭିତରକୁ ।

ସୋମନାଥ ଅଧିକତର କ୍ଷୁବ୍‌ଧ ! ସେ କିଂକର୍ତ୍ତବ୍ୟବିମୂଢ଼ ହୋଇ ଓହ୍ଲାଇବାକୁ ଯାଉଛନ୍ତି, ଦରଜାଟା ପୁଣି ଖୋଲିଥିଲା ଆଉ ଭିତରୁ ଶୁଭିଥିଲା ଗୋଟିଏ ନାରୀ କଣ୍ଠ- କାହାକୁ ଖୋଜୁଥିଲେ ବାବୁ ? ସୋମନାଥ ଫେରି ଚାହିଁଥିଲେ । ଖଇ ଧଳା ଶାଢ଼ିରେ ମଧ୍ୟବୟସୀ ସ୍ତ୍ରୀଟିଏ, ବିଧବା । ହଠାତ୍ ସୋମନାଥଙ୍କ ମନରେ ଆଙ୍କି ହୋଇଗଲା ତିରିଶ ବର୍ଷ ତଳର ଗୋଟିଏ ନବାଗତା ବଧୂର ସସ୍ମିତ ମୁଖ ।

ମକରାମାମୁର ସ୍ତ୍ରୀ । ଆଜି ଯାହାକୁ ଦେଖୁଛନ୍ତି ସେ ତ ତା'ର ପ୍ରେତାତ୍ମା ନୁହେଁ, ଯେପରି ପ୍ରେତାତ୍ମାର ଛାୟା । ସୋମନାଥ ଯେପରି ବିଡ୍ ବିଡ୍ ହେଲେ... ମୁଁ.. ମୁଁ.. ସୋମନାଥ-

ସ୍ତ୍ରୀଜଣକ କହିଲେ- ଘରେ କେହି ପୁରୁଷଲୋକ ନାହାନ୍ତି । ପାଞ୍ଚଟା ପରେ ଆସ । ସେ ଚାଲିଯାଉଥିଲେ । ଏଥର ସୋମନାଥ ସାହସ ସଞ୍ଚୟ କରି କହିଲେ, ମୁଁ ସୋମନାଥ ।

- ସୋମନାଥ ?

ପିତେଇପୁର ଶାସନର ବଳଭଦ୍ର ତ୍ରିପାଠୀଙ୍କ ପୁଅ ।

- ପିତେଇପୁର ଶାସନ- ମାନେ- ମାନେ

ହଠାତ୍ ସୋମନାଥ ଲକ୍ଷ୍ୟ କଲେ ତାଙ୍କର ସ୍ମୃତି ସକ୍ରିୟ ହୋଇ ଉଠିଛି । କିନ୍ତୁ ଉଲ୍ଲାସ ବଦଳରେ ଆସୁଛି ସଙ୍କୋଚ । ସେ କିଛି ନ କହି ଘରକୁ ଚାଲିଗଲେ । ତା'ପରେ ପୂର୍ବର ସେଇ ପିଲାଟି ଆସିଥିଲା ପାଣି ଲୋଟେ ନେଇ ।

ଘର ଭିତରକୁ ପଶୁ ପଶୁ ସୋମନାଥ ଶୁଣିଲେ ଏକ ତୀକ୍ଷ୍ଣ ନାରୀ କଣ୍ଠ- କୁଣିଆ, କୁଣିଆ ! ସବୁବେଳେ ଯା'ଙ୍କର କୁଣିଆ ଆସୁଛନ୍ତି । ମୁଁ ତୁମ କୁଣିଆ ଚର୍ଚ୍ଚା କରିପାରିବି ନାହିଁ । ପଠେଇ ଦେଉନ ତୁମ ଝିଅସୁନ୍ଦରୀଙ୍କୁ ପଇସା ରୋଜଗାର କରି ଆଣିବ । ତମେ କୁଣିଆ ଚର୍ଚ୍ଚା କରିବ, ହେଃ, ପୁଅସାଆନ୍ତ ଦରମା ଉଡ଼େଇବ ବୋତଲରେ ଆଉ ମାଆସାଆନ୍ତାଣୀ କରିବେ କୁଣିଆ ଚର୍ଚ୍ଚା ...

- ତୁନି ହଅ ଲୋ ମିଶ୍ରଝିଅ । ତୋତେ କ'ଣ ଦଇବ ଛାଡ଼ିଛି କି ? କାହିଁ କେତେ ଦିନେ କେମିତି ଆସିଛି ପିଲାଟା । କ'ଣ ସେ ଭାବିବ କହିଲୁ ?

- ଅ-ଅ, କ'ଣ ଭାବିବେ । ସତେ ଯେମିତି ପେଡ଼ି ପେଟରାରେ ଲୁଚେଇ ରଖିଛନ୍ତି । ହାଟରେ ପଡ଼ି ଦାଣ୍ଡରେ ଗଡ଼ାଗଡ଼ି ହେଉଛି । ଇଜ୍ଜତ ଅଛି ଯେ ଲୁଚେଇବେ...

ତା'ପରେ ଶୁଭିଲା ସକ ସକ କାନ୍ଦଣା । ସୋମନାଥ ବସିଥିଲେ ଦାଣ୍ଡଘର ଖଟ ଉପରେ । ନିର୍ବାକ, ନିସ୍ପନ୍ଦ- ତା'ପରେ କୁନିମାଈଁ ଅବସ୍ଥାକୁ ସମ୍ଭାଳି ନେଇଥିଲେ ତାଙ୍କର ସ୍ୱଭାବସୁଲଭ ବ୍ୟବହାରରେ । କହିଥିଲେ, ଭୋଳି ଆଚାର୍ଯ୍ୟଙ୍କ ପର ଦୁଇ ପୁରୁଷର ଦୀର୍ଘ ତିରିଶ ବର୍ଷର ଇତିହାସ ଆଉ ତାହା ସହିତ କମଳପୁର ଗାଁର ଭୌଗୋଳିକ ଏବଂ ଐତିହାସିକ ପଟ୍ଟପରିବର୍ତ୍ତନର କାହାଣୀ । ତାଙ୍କ ପୁଅ ଦୁଃଶାସନର ଦୁଃଶାସନ । ଶେଠ୍ ବନବନବାଲାଙ୍କ ଫେକ୍ଟ୍ରି ଦ୍ୱାରା ଶାସନର ସବୁ ଜମି କ୍ରୟ, ବଦଳରେ ଚାକିରି ଦାନ । ତା'ପରେ ଆଧୁନିକ ଯାନ୍ତ୍ରିକ ସଭ୍ୟତାର ଅତ୍ୟାବଶ୍ୟକୀୟ ଅନୁଦାନସବୁ ।

ତାଙ୍କର ଗୋଟିଏ ମାତ୍ର ଅନୁରୋଧ, ସୋମନାଥଙ୍କର ଏତେ ସବୁ ଚିହ୍ନା ଅଛନ୍ତି, ଝିଅ ମାଣିକକୁ ଯେପରି ଯେଉଁଠି ହେଲେ କାହା ହାତରେ ଛନ୍ଦି ଦିଅନ୍ତେ । ଦୁଃଶାସନ ଏସବୁରେ ନିର୍ବିକାର । ସେ ଚାହାନ୍ତି ଯେ କୌଣସି ପ୍ରକାରେ ମାଣିକ ଛନ୍ଦି ହେଇଯାଉ ସ୍ୱଜାତିରେ । ଅପ୍ରତ୍ୟାଶିତ ଦାୟିତ୍ୱର ବୋଝରେ ସୋମନାଥ ଅତିଷ୍ଠ ହୋଇ ପଡ଼ିଥିଲେ ମଧ ଖୁବ୍ ଶୀଘ୍ର ଭୋଳି ଆଚାର୍ଯ୍ୟଙ୍କ ଦ୍ୱିତୀୟ ପୁରୁଷ ପାଇଁ କିଛି କରିବାକୁ ସେ ସ୍ଥିର କରିଥିଲେ । ମାଣିକ ପାଇଁ ଜୋଇଁଟିଏ ସେ ନିଶ୍ଚୟ ବ୍ୟବସ୍ଥା କରିଦେବେ । ଦୁଃଶାସନ ସହିତ ରାତ୍ରଭୋଜନ କରିବେ, ମାଣିକକୁ ଦେଖିବେ । ଏହି ଆଶାରେ ସୋମନାଥ ସେଦିନ ଚାହିଁଥିଲେ ଅନେକ ରାତିଯାଏ । ମାଣିକ ସେଦିନ ଦୁଃଶାସନ ସହ ଯାଇଥିଲା

ଫେକ୍ଟ୍ରିକୁ । କୁନିମାଈଁଙ୍କ ଅନିଚ୍ଛାସତ୍ତ୍ୱେ ଦୁଃଶାସନ ତାକୁ ଟାଣି ନେଇଯାଇଥିଲା ଜବରଦସ୍ତ କମ୍ପାନୀର ଗୋଟାଏ ଚତୁର୍ଥ ଶ୍ରେଣୀ କର୍ମଚାରୀ ଇଣ୍ଟରଭ୍ୟୁ ପାଇଁ । କିନ୍ତୁ ରାତ୍ରିର ଦ୍ୱିତୀୟ ପ୍ରହର ଶେଷ ହେବା ଅବଧି ସେମାନେ ଆସି ନ ଥିଲେ ।

ଘରେ ଆଶଙ୍କା ବଢ଼ିଥିଲା କ୍ରମାଗତ । କୁନିମାଈଁଙ୍କର ଚାପା କାନ୍ଦଣାର ସ୍ୱର ସୋମନାଥଙ୍କର ଉପସ୍ଥିତି ଏବଂ ସାନ୍ତ୍ୱନାରେ ଛାତିର କୋହ ହେଇ ରହିଯାଇଥିଲା । ଶେଷରେ ଆସିଥିଲା ଦୁଃଶାସନ । ଏକାକୀ ସମ୍ପୂର୍ଣ୍ଣ ଅଣଆୟତ୍ତ ହୋଇ । କୁନିମାଈଁ ଚିତ୍କାର କରି କହି ଉଠିଥିଲେ- ଦୁଃଶା ! ମୋ ମାଣିକ କାହିଁ ? କହ ମୋ ମାଣିକକୁ ତୁ କେଉଁଠି ଛାଡ଼ିଆସିଛୁ ? ଦୁଃଶାସନ ମୁହଁରେ କେବଳ ଗୋଟିଏ କଥା- ମୋତେ କେହି କିଛି ପଚାରନା । ମୁଁ କିଛି ଜାଣେନା । ତା'ପରେ ନିଷ୍ଫଳ ଆକ୍ରୋଶରେ ବର୍ଷଣ ହୋଇଥିଲା ସ୍ତ୍ରୀ ଉପରେ ନିସ୍ତୁକ ମାଡ଼ । ସମ୍ଭବତଃ ଏସବୁ ହୋଇଯାଇଥିଲା ଦୈନନ୍ଦିନ ବ୍ୟାପାର । ଏଣୁ ସ୍ତ୍ରୀ ତା'ର ସହିଯାଇଥିଲା ସବୁ ନିର୍ବିବାଦରେ । କେବଳ ଚାପା କଣ୍ଠରେ ଗୋଟିଏ ପଦ କଥା- ମାରିଦିଅ ମୋତେ । ପାର୍ ପାଇଯିବି ଏ ନର୍କକୁଣ୍ଡରୁ । କୁନିମାଈଁଙ୍କର ଚାପା କାନ୍ଦଣାକୁ ରୋକିବାର ନିଷ୍ଫଳ ପ୍ରୟାସ ଆଉ ସୋମନାଥ କରି ନ ଥିଲେ । ରାତ୍ରିର ଶେଷ ପ୍ରହରରେ ତାଣ୍ଡବ ନୃତ୍ୟର ପ୍ରଦର୍ଶନୀ ପରେ ଦୁଃଶାସନ ନୀରବ ହୋଇଯାଇଥିଲା ବେଶ୍ କେଇ ଘଣ୍ଟା ପାଇଁ । ଶ୍ରାବଣର ବର୍ଷୁକ ମେଘର ଅବିରତ ଘନ ବର୍ଷଣ ପରର ସମାହିତ ଅବ୍ୟାହତି ପରି ।

ଶେଷରେ ସୋମନାଥ ନିଜେ ମଧ ଢୋଳେଇ ପଡ଼ିଥିଲେ ଦୁଇଘଣ୍ଟା । ସକାଳ ହେଲେ ବସ୍‌ରେ ଫେରିଯିବେ ।

ପରଦିନ ସକାଳ ସାତଟାରେ ନିଦ ଭାଙ୍ଗିଲା ଏକ ମର୍ମାନ୍ତିକ କ୍ରନ୍ଦନର ବିସ୍ଫୋରଣରେ । କେହି ଜଣେ ଆସି ଖବର ଦେଇଛି ଫେକ୍ଟ୍ରି ପଛପଟ ମହାଦେବଙ୍କ ମନ୍ଦିର କଡ଼ରେ ମାଣିକର ମୃତ ଦେହ । ଘଟଣା ପ୍ରବାହର ଆକସ୍ମିକ ଭୟାବହତାରେ ସୋମନାଥ ସ୍ତବ୍ଧ ହୋଇଯାଇଥିଲେ । ତାଙ୍କର ଚିତ୍କାର କରି କାନ୍ଦିବାକୁ ଇଚ୍ଛା ହେଉଥିଲେ ମଧ ସେ କାନ୍ଦି ପାରି ନ ଥିଲେ । ଶେଷରେ ମାଣିକର ପ୍ରଥମ ଏବଂ ଶେଷ ଦର୍ଶନ ପାଇଁ ସେ ଯାଇଥିଲେ ମହାଦେବ ମନ୍ଦିର ପାଖକୁ ।

ଏକଦା କେଉଁ ଭୋଇବଂଶୀୟ ରାଜା ତିଆରି କରିଥିବା, ଯେଉଁ ପଥର ତିଆରି ମହାଦେବ ମନ୍ଦିର ନୀଳକଇଁ ପୋଖରୀ ହୁଡ଼ାର ଅତିକାୟ ଶତାବ୍ଦୀ ପ୍ରାଚୀନ ମହାବଟବୃକ୍ଷ ଛାୟାରେ ସ୍ୱୟଂ ଯୋଗୀଶ୍ୱର ଶିବଙ୍କ ଭଳି ନିଜର ସଂଭ୍ରାନ୍ତ ସ୍ଥିତି ସ୍ଥାପନ କରିଥିଲା ଆଜି ତାହା ବନ୍‌ବନ୍‌ବାଲା ଫେକ୍ଟ୍ରି ପଛପଟେ ଏକ ଅନାବଶ୍ୟକ ସ୍ଥିତି ଭଳି ଆତ୍ମଗୋପନ କରିଛି ବିଶାଳ ପ୍ରାଚୀର ପଛପଟେ । ସେ ନୀଳକଇଁ ପୋଖରୀର ସ୍ଥିତି ନାହିଁ କି ବଟବୃକ୍ଷର ଚିହ୍ନ ମଧ ନାହିଁ । ବନ୍‌ବନ୍‌ବାଲା ରାମଭକ୍ତ । ଏଣୁ ଫେକ୍ଟ୍ରି ସମ୍ମୁଖରେ

ବିରାଟ ଏକ ରାମମନ୍ଦିର । ନିଅନ୍ ଆଲୋକମାଳାରେ, ରାଜସିକ ପରିଚର୍ଯ୍ୟାରେ ଯଥାର୍ଥ ରାଜକୀୟ ଥାଟରେ ସିଂହାସନାରୂଢ଼ ଇଟାଲୀୟ ମାର୍ବଲରେ ତିଆରି ତ୍ରିମୂର୍ତ୍ତି- ରାମ, ଲକ୍ଷ୍ମଣ, ସୀତା- ଆଉ ସମ୍ଭବତଃ ନିଜର ଏଇ ଦୟନୀୟ ସଙ୍କୁଚିତ ସ୍ଥିତିକୁ ଯୋଗୀଜନସୁଲଭ ଗୋପନୀୟତା ଏବଂ ନିରାଡ଼ମ୍ବରତାର ସ୍ୱାଭାବିକ ପ୍ରକାଶ ଭାବି ନିର୍ବିବାଦରେ ସ୍ୱୀକାର କରି ନେଇଥିଲେ ସ୍ୱୟଂ କମଳେଶ୍ୱର ମହାଦେବ ।

ତାଙ୍କରି କଡ଼କୁ ପଡ଼ିଥିଲା ପ୍ରାୟୋଲଗ୍ନା ମାଣିକର ମୃତ ଦେହ ମୁହଁମାଡ଼ି । ଭୋଳି ଅଜାଙ୍କ ପରି ଗହମଗୋରା ଏବଂ ପରିପୁଷ୍ଟ ଦେହ । ମୁଣ୍ଡର ଗହଳ ଆଉ ଲମ୍ବା ବେଣୀ ଫିଟି ପଡ଼ିଥିଲା ଇତସ୍ତତଃ ହୋଇ । ଦେହର ନିମ୍ନଭାଗରେ ରକ୍ତାକ୍ତ କ୍ଷତ । ମାଣିକର ମୁହଁ ଦେଖିବା ସୋମନାଥଙ୍କ ପକ୍ଷରେ ସମ୍ଭବ ହୋଇପାରି ନ ଥିଲା ଶେଷ ପର୍ଯ୍ୟନ୍ତ । ଭିଡ଼ ବାନ୍ଧିଥିବା ଦେଖଣାହାରିମାନଙ୍କର ନାନାଦି ଶ୍ରୁତିମଧୁର ତଥା ଜିହ୍ୱାମଧୁର ଚର୍ଚ୍ଚା ଶୁଣି, ଶୁଣି ନ ଥିଲେ ସୋମନାଥ ।

ଭୋଳିଅଜାଙ୍କର ଦ୍ୱିତୀୟ ପୁରୁଷର ଏହି ଶୋଚନୀୟ ପରାଜୟ ଥିଲା ତାଙ୍କର ନିଜସ୍ୱ ମର୍ମନ୍ତୁଦ ପରାଜୟ । କୁନିମାଈଙ୍କୁ ମୁହଁ ଦେଖାଇବାର ସାହସ ଆଉ ତାଙ୍କର ନ ଥିଲା । ପୋଲିସ ଆସିବ, ଶବ ଯିବ ସହରକୁ ପୋଷ୍ଟମର୍ଟମ୍ ପାଇଁ ।

ସମ୍ଭବତଃ ପୋଷ୍ଟମର୍ଟମ ଶେଷରେ ମାଣିକର ସେହି ଭୁକ୍ତାବଶିଷ୍ଟ ଶରୀରର ଛିନ୍ନାଂଶକୁ ଫୋପାଡ଼ି ଦିଆଯିବ ଶ୍ୱାନ ଶୃଗାଳର ଆହାର ପାଇଁ ଅଥବା ବାହାର କରି ନିଆଯିବ ତା'ର ସ୍କେଲିଟନ୍ ଆଧୁନିକ ଆନାଟମିର ଅଧ୍ୟୟନ ପାଇଁ... ଆଉ ଏଣେ ଚାଲିବ ପୋଲିସ୍‌ର ଚିରାଚରିତ ସାଡ଼ମ୍ବର ଇନ୍‌ଭେଷ୍ଟିଗେସନ୍... ଶେଷରେ ରିପୋର୍ଟ ହେବ ନଷ୍ଟଚରିତ୍ରା ମାଣିକ ଆତ୍ମହତ୍ୟା କରିଥିଲା ସମାଜ ଭୟରେ...

ସୋମନାଥ କେତେବେଳେ ଭିଡ଼ ଠେଲି ବାହାରି ଆସିଥିଲେ ଜାଣନ୍ତି ନାହିଁ । ତେବେ ଅଠରବାଙ୍କି ନଈର ପୋଲ ପାଖରେ ପହଞ୍ଚି ଦେଖିଲେ କେତେଟା ସରକାରୀ ଜିପ୍‌ର ଶୋଭାଯାତ୍ରା । ଏକ ସଦ୍ୟକ୍ରୀତ ହିନ୍ଦୁସ୍ଥାନ ମୋଟର୍ସ ଲିମିଟେଡ଼ର ଲଗ୍‌ଜୁରି କାର୍ ଅଲିଭ୍‌ଗ୍ରୀନ୍ କଣ୍ଟେସା । ସାମ୍ନାରେ ତାର ତ୍ରିରଙ୍ଗା ପତାକା ଏବଂ ପଛପଟରେ ସରକାରୀ କ୍ରେଷ୍ଟ୍ । ପୋଲିସ୍ ଅସଭ୍ୟ ଜନତା ଭିଡ଼ରୁ କର୍ଡ଼ନ କରି ନେଉଥାଏ ଯାହାଙ୍କୁ ସେ ହେଲେ ମାନ୍ୟବର ଶିକ୍ଷମନ୍ତ୍ରୀ ମହୋଦୟ ଏବଂ ତାଙ୍କର କତିପୟ ପାରିଷଦ । ଶିଳ୍ପପତି ସେଠ୍ ବନବନ୍‌ବାଲାଙ୍କର ଗତ ରାତ୍ରିର ଅତିଥି...

[୧୯୮୯]

# ଟାଣ୍ଡ୍ରିଲରୁ ଟରଣ୍ଟୋ

ଅଧ୍ୟାପକ ଡଃ ଦାସ ଅତି ଅସହାୟ ଭାବେ ଟାଣ୍ଡ୍ରିଲଟିଏ ଢୋକିଲେ । ଛାତି ଆଉ ପାଦର ଶିରାରେ ଶିରାରେ ଯନ୍ତ୍ରଣା ଘନୀଭୂତ ହେଉଥିଲା । ଏଇଟିକୁ ନେଇ ଚଉଦଟି ପିଲ୍ ଦିନକୁ ତିନୋଟି କରି- ସକାଳେ, ଖରାବେଳେ, ରାତିରେ ଶୋଇବାକୁ ଯିବା ପୂର୍ବରୁ । ଥ୍ରାଇସ୍ ଏ ଡେ, ମର୍ଣ୍ଣିଂ, ନୁନ୍ ଏଣ୍ଡ ଏଟ୍ ନାଇଟ୍ ବିଫୋର ଗୋଇଂ ଟୁ ବେଡ୍ । କଣ୍ଟିନିଉ ଓ୍ୱାନ୍ ଉଇକ୍ ମିଃ ଦାସ, ଡୋଣ୍ଟ ଓରି । ଇଉ ଉଇଲ୍ ସି ଏଭ୍ରିଥିଙ୍ଗ୍ ଓକେ ଆଫ୍ଟର । ଏଃ ପିଲ୍‌ଟା ଛାତିରେ ଲାଗିଲା । ସେ ଆଉ ଥରେ ପାଣି ଢୋକେ ପିଇଲେ । ଛାତିକୁ କିଛି ସମୟ ଆଉଁଶିଲେ । ପିଞ୍ଜରା ହାଡ଼ଗୁଡ଼ାକ ବେଶ୍ ଗଣି ହେଉଛି । ପୁଣି ମୁହଁରେ ଦୁଇ ହାତ ବୁଲେଇଲେ । ହନୁହାଡ଼ ଦୁଇଟା କ୍ରମଶଃ ସ୍ପଷ୍ଟ ହେଉଛି । କପାଳ କୁଞ୍ଚିତ ହେଉଛି । ଇତସ୍ତତଃ ଟାଉଁସିଆ ଟାଉଁସିଆ ଗୁଡ଼ଗୁଡ଼ା ଯା ଭିତରେ ଖୁବ୍ କର୍କଶ ହେଇ ଉଠିଛି । ସେ ଦର୍ପଣଟା କାଢ଼ିଆଣି ଚାହିଁଲେ । ଗହୀର ତଳୁ ପାଣିଚିଆ ଆଖି ଭିତର ଡୋଳା ଦୁଇଟା ତାଙ୍କୁ ଖୁବ୍ ଦୟନୀୟ ମନେ ହେଲା । କାନ ପାଖରେ କପାଳ କଡ଼ରେ ବାଳଗୁଡ଼ା ଯେମିତି କମ୍ପିଟିସନ୍ କରି ଧଳା ହେବାକୁ ଲାଗିଛନ୍ତି । ଓଠ ଦୁଇଟା ମୁର୍ଦ୍ଦାରିଆ ଫିକା । ଦର୍ପଣଟା ଏକ ପ୍ରକାର ଫିଙ୍ଗିଦେଲେ ସେ । ଆଉଟ୍... ଆଉଟ୍... ବ୍ରିଫ୍‌କେଣ୍ଡଲ । କେଣ୍ଡଲଟା ସତେ କେତେ ବ୍ରିଫ୍ ହୋଇଯାଇଛି ଯା ଭିତରେ । ଅନାହୂତ । ଅପ୍ରତ୍ୟାଶିତ । ସେ ପାଖ ସେଲ୍‌ଫରୁ ଏମିତି କ'ଣ ଗୋଟାଏ ଟାଣି ଆଣିଲେ । ଫେମିନା । ଏମିତି ଓଲଟାଇଗଲେ ପୃଷ୍ଠାଗୁଡ଼ିକ । କ୍ଲିନିକ୍ ସାମ୍ପୁ, ଏ ନିଉ ଏକ୍ସପେରିମେଣ୍ଟ ଅଫ୍ ହିନ୍ଦୁସ୍ଥାନ ଲିଭର ଲିମିଟେଡ଼... କାଶ ? ଷ୍ଟ୍ରେପସିଲ୍‌ସ ! ମଫତ୍‌ଲାଲ ଗ୍ରୁପ୍‌ସ ଓ୍ୱାଣ୍ଡର ପ୍ରୋଡକ୍ଟ ଅଫ୍ ଦି ସେଞ୍ଚୁରୀ ପଲିଏଷ୍ଟର ଫିଲାମେଣ୍ଟ ୟାଣ୍ଡ ଫେବ୍ରିକ୍‌ସ... ଶମିତା ଏନ୍ ଏଞ୍ଜେଲ୍ ଅଫ୍ ଦି ଫିଲ୍ମ ଏଣ୍ଡ ଟେଲିଭିଜନ ଇନଷ୍ଟିଚ୍ୟୁଟ.... ଏନ୍ ଇଣ୍ଡିଆନ୍ ଓମେନ୍ ଇନ୍ ଉଗାଣ୍ଡା'ସ୍ ଗ୍ରିପ୍... ଧେତ୍, ଧେତ୍ ଟ୍ରାସ୍... ଟ୍ରାସ୍... ଅଲ ଟ୍ରାସ୍... ସେ ପୁଣି ଶୋଇବାକୁ ଚେଷ୍ଟା କଲେ । ମେରୁଦଣ୍ଡଟା ତାଙ୍କର ଭାଙ୍ଗିପଡ଼ିବା ପରି ଲାଗିଲା । ତକିଆଟା ଟାଣିଆଣି କାନ୍ଥକୁ ସାମାନ୍ୟ ଭରା ଦେଇ ବସିଲେ । ଘରଟା ଭିତରେ ଅବରୁଦ୍ଧ ବାୟୁ ତାଙ୍କୁ ଅକ୍‌ଟୋପାସ୍ ପରି ପେଷି ଦେଉଥିଲା । ସତେ ଝରକା ଦୁଇଟା ବନ୍ଦ କରିଦେବାକୁ କହି ସେ ଖୁବ୍ ଭୁଲ କରିଛନ୍ତି । ପାଖ ଝରକାଟାକୁ ସେ ନିଜେ ଖୋଲିଦେଲେ । ବାହାର ଖରାରୁ ଝଲକାଏ ତାଙ୍କ ବିଛଣାରେ ପଡ଼ିଲା । ବାହାରେ ଶେଷ ହେମନ୍ତର ବିଷଣ୍ଣ ଅପରାହ୍ଣ । ଫିକା ଆଉ ପାଣିଚିଆ ଖରା ଭିତରେ ଦୂର

ରାସ୍ତାର ନୟନଯୋଡ଼ି, ନଈବନ୍ଧ, ତାଳଧାଡ଼ି, ପଣସ ତୋଟା ଆଉ କୁଚିଳା ବଣ ସବୁ ଅଣ୍ଟାପାଣି କରା, ଦରଗାଧୁଆ ମଲୁ ପରି ପେଟ ଖଙ୍କାଳି ଠିଆ ହେଇଛନ୍ତି । ଇତସ୍ତତଃ ପଙ୍ଖ ଝାଡ଼ି ଉଡ଼ି ବୁଲୁଛନ୍ତି କେଇଟା ରଙ୍କୁଣା ମାଛରଙ୍କା ଆଉ ଟିଙ୍ଗିଭ ନଈ ପନ୍ତାର ପିଠାଳୁ ଆଉ ଦରସାବ୍‌ଜା ତଣ୍ଡୀବଣ ଭିତରେ । ପ୍ରାୟ ମୁମୂର୍ଷୁ ବାୟୁ ଦିହରେ ଦରମଉଳା ସୋରିଷଫୁଲର ମର୍‌ବିଡ୍ ବାସ୍ନା । ଆଃ... ବିସ୍ମୃତିର ସମୁଦ୍ର ଭିତରୁ ବିଗତ ଶୈଶବର ଅଗଣିତ ଢେଉସବୁ ଅଧ୍ୟାପକ ଡଃ ଦାସଙ୍କ କଙ୍କାଳସାର ଶରୀରର ନିଷ୍ପୀଡ଼ିତ ପିଞ୍ଜରା ଭିତରେ ପିଟି ହୋଇଗଲେ ଏବଂ ଆଖିରେ ତାଙ୍କର ନେସି ଦେଇଗଲେ ଦୂର ଅତୀତର ରାଶି ରାଶି ସ୍ତରୀଭୂତ ଅନ୍ଧକାର ଭିତରେ ଏଠି ସେଠି କେତେଟା ଜୁଳୁଜୁଳା ପୋକର ଫୁଲ୍‌କି । ନୂଆ ଶାସନର ଗୁହାଳ ବାଡ଼ିପଟ ଟୁବ । ଟୁବ ଆଡ଼ିରେ ଆକାଶଛୁଆଁ ଅର୍ଜୁନ ଆଉ ଶିରୀଷ ଗଛମୂଳେ ଖୁନ୍ଦାଖୁନ୍ଦି ହୋଇ କିଆବୁଦା । ଆଡ଼ି ତଳକୁ ପାଚିଲା ଧାନର ସୁନାଶିଆଳ ଶୁଆ କିଆରି ଦୂରକୁ ଦୂରକୁ ଢେଉ ଢେଉକା ଫିକା ହଳଦିଆ ସମୁଦ୍ର ପରି । ମଝିରେ ମଝିରେ ପାଞ୍ଚପଡ଼ା, ଶ୍ରୀରାମପୁର, ଆଉ ବିରିପଡ଼ା ଗାଁର ଗହଳ ତୋଟାଘେରା ନୁଆଁଣିଆ ଚାଳର ଘରସବୁ ସେଇ ସମୁଦ୍ର ଭିତରେ ଅନାବିଷ୍କୃତ ରହସ୍ୟଘନ ଟାପୁ । ଦିଗନ୍ତରେ ଧୂଆଁଳିଆ ପାହାଡ଼ ।

- ଏଇ ପାହାଡ଼ଗୁଡ଼ା କେଉଁଠି ଭାଉଜ ?

- ଦୂରରେ, ଖୁଉବ୍ ଦୂରରେ ।

- ଯାଇହବନି ?

- ହୁଁ- ଉଁ । ଈଶରପୁର ଗାଁରେ ମୋର ବାପଘର । ତୁମ ବଅସରେ ଏଇଦିନେ ପାହାଡ଼ୀ ଝାଡ଼ିରେ କାନକୋଳିଖିଆ, ଚଲା ହିଡ଼ରେ ଧାନ ସାଉଁଟା ଆଉ ଶାଳପତର ଠୁଙ୍ଗାରେ ହିଡ଼ କଡ଼ର ଗୋହିରୀରୁ ପାଣିପିଆ...

- ଇସ୍... ମୋତେ ନବ ଭାଉଜ, ତୁମ ଗାଁକୁ ? କେଡ଼େ ସୁନ୍ଦର ତୁମ ଗାଁ । ସେଠି ଖରାଦିନେ ଶିମିଳିଫୁଲ ଫୁଟେ ?

ହୁଁ - ଉଁ ।

- ବଉଳ ?

- ହୁଁ- ଉଁ ।

କୁଆଁର ପୂନେଇଁରେ କଇଁଘର ହୁଏ ?

- ହୁଁ- ଉଁ ।

- ତୁମ ଗାଁ ଆକାଶରେ ବଗ ଆଉ ବଣିଚଢ଼େଇ ଉଡ଼ନ୍ତି ?

- ହୁଁ -ଉଁ ।

- ଜହ୍ନ ଉଏଁ ?

- ହୁଁ-ଉଁ ।

- ଇ-ସ୍ ତୁମ ଗାଁ କେଡ଼େ ସୁନ୍ଦର ଭାଉଜ ! ନବ ତୁମେ ମୋତେ ତୁମ ଗାଁକୁ ?

- ତୁମର ଇସ୍କୁଲ ଯେ ।

- ମୁଁ ଇସ୍କୁଲ ଯିବିନି ଭାଉଜ । ମୋତେ ଅଙ୍କ ଆସେନି ବୋଲି କୈଳାସମାଷ୍ଟ୍ରେ ଖୁଉବ୍ ମାରନ୍ତି ।

ଛି, ଏମିତି କହନ୍ତି ? ପାଠ ପଢ଼ି ବଡ଼ ମଣିଷ ହେବ ।

- ନା । ଭାଉଜ, ମୁଁ ବଡ଼ ହେବିନି... ମୁଁ ତୁମ ଗାଁକୁ ଯିବି ଭାଉଜ ।...

ବାସନମଜା ଛାଡ଼ି ଭାଉଜ ଉଠି ଆସନ୍ତି ଟୁବ ଉପରକୁ । ଆଡ଼ିରେ ଗୋଡ଼ କଚାଡ଼ି କାନ୍ଦୁଥିବା ଟିକି ଦିଅରଟିର ମୁହଁ ପୋଛିଦେଇ ଚୁମା ଦିଅନ୍ତି । ଛାତିକି ଆଉଜେଇ ନେଇ ଆଦର କରନ୍ତି- 'ନେବି ନେବି ନି୍ଶ୍ଚେ ନେବି ।' କିଆବୁଦା ସନ୍ଧିରୁ ଗୋଡ଼ାଗୋଡ଼ି ହେଇ ହରଡ଼ଖାଇ ଦି'ଟା ଉଡ଼ି ଯା'ନ୍ତି ପାଖ ଧାନ କିଆରିକୁ । କେଉଁଠୁ ଗୋଟାଏ ହଳଦୀବସନ୍ତ ଅଚାନକ ରାବ ଛାଡ଼େ । ଭାଉଜ ଚମକିପଡ଼ି ଚାହାନ୍ତି ହରଡ଼ଖାଇ ଯୋଡ଼ି ଆଡ଼େ... ''ହେଇ ହଳଦୀବସନ୍ତ ଡାକିଲାଣି । ଚାଲ, ତୁମ ନନା ଆଜି ଆସିବେ । ତାଙ୍କରି ସଙ୍ଗେ ଲଗେଇବ ଯେ ଆମ ଗାଁକୁ ପଠେଇଦେବେ ।'' କନକଭାଉଜଙ୍କ ମମତାଧୂଆ ଆଖିର କଜଳ, ସରାଗଭରା କେଶର କବରୀ ଆଉ ପ୍ରାକ୍ ମାତୃତ୍ୱର ନିରାଭରଣ ଶରୀରରେ କବୋଷ୍ଣ କୋମଳତା ଅଧ୍ୟାପକ ଡଃ ଦାସଙ୍କ ଶରୀରରେ ଛୁଇଁ ଦେଇଗଲା ନବ କୈଶୋରର ମିଷ୍ଟିକ୍ ହାଓ୍ୱା... ଆଃ ରିଜୁଭେନେଶ୍ଟ... ଏକ ବିମୂଢ଼ ସମ୍ମୋହନ ଭିତରେ ତାଙ୍କର ଭିଜା ଆଖିପତା ତଳୁ ବାହାରଟା କେତେବେଳୁ ଅସ୍ପଷ୍ଟ ହୋଇସାରିଥିଲା । ଭିତରର ଅଥର୍ବ ବାତାବରଣ ଭିତରେ ପଙ୍ଗୁ ଦେହଟା ତାଙ୍କର ଆହୁରି ଅଥର୍ବ, ଆହୁରି ଅସାଡ଼ ହୋଇପଡ଼ିଥିଲା । କୋଷ ପରେ କୋଷ ସଂକ୍ରମିତ କରି ଚରିଯାଉଥିଲା ଇନ୍‌ଭେଲିଡିଟି । ବାହାରୁ ଦୃଷ୍ଟି ଫେରେଇ ସେ ଭିତରେ କିଛି ଖୋଜିବାକୁ ଚେଷ୍ଟା କଲେ । ଭିତରର ଅସହ୍ୟ ସନ୍ନାଟା ଭିତରେ କେମିତି କେଜାଣି ଦରଜାର କଳା ପରଦାଟା ହଲୁଥିଲା ରହି ରହି । ଡଃ ଦାସ ଚମକି ପଡ଼ିଲେ ସେଇ ପରଦାଟା ଦେଖି । ଲେବୋରେଟୋରୀର ଡାର୍କରୁମ୍‌ରେ ହଲୁଥିବା କଳା ପରଦାଟା ପାଖରେ ସେଇ ଝିଅଟା, ନୂଆ ହେଇ ତାଙ୍କ ଡିପାର୍ଟମେଣ୍ଟକୁ ଆସିଥିବା ଅଧ୍ୟାପିକାଜଣକ, କ'ଣ ଯେମିତି ନାଁଟା ତା'ର ମିସ୍... ମିସ୍ ଗାର୍ଗୀ କି ଗାଡ଼ଗିଲ ଏଇମିତି କ'ଣ ହେବ । କେଉଁଠିକା ଲୋକ କେଜାଣି ? ପସିବ୍ଲି ମହାରାଷ୍ଟ୍ରୀୟାନ୍ । ଝିଅଟାକୁ ଦେଖିଲେ କିନ୍ତୁ ତାଙ୍କର ମନେପଡ଼େ କେଉଁଠି ଗୋଟାଏ ପଢ଼ିଥିବା ଉଭଟ ସଂସ୍କୃତ ପ୍ରବଚନର କେଇଟା ପଦ ''ଗୁର୍ଜରୀଣାଂସ୍ତନେଷୁ ।'' ପରଫ୍ୟୁମଡ଼ ଭେସେଲିନ୍ ଭଳି ଚେହେରା । ଝିଅଟା ଖୁବ୍

ସମ୍ଭବ ପକ୍‌ସ ଆଫେକ୍‌ଟେଡ୍ । ମୁହଁରେ କେଇପରସ୍ତ ରୁଜ୍‌ର ଆସ୍ତରଣ । ସବୁବେଳେ କଥାଟାକୁ ଫାଙ୍କି ଦେବାର ବିଫଳ ଚେଷ୍ଟା କରେ । ବାହାରକୁ ଆସୁ ଆସୁ ଠିକ୍ ସେଇ ପରଦାଟା ପାଖରେ ସେଦିନ କହିଥିଲା- ଆପଣ କିନ୍ତୁ ଖୁବ୍ ଆପାଥେଟିକ୍ ମି. ଦାସ ।''

- ଆପାଥେଟିକ୍ ? ବାଃ, ଖୁବ୍ ଚମତ୍କାର ଲିଟରେରୀ ୱାର୍ଡ଼ ତ ଆପଣ କହିପାରନ୍ତି । ସ୍ମିତ ହସି ସେ ଉତ୍ତର ଦେଇଥିଲେ ।

- ଲାଇଫ୍ ଇଜ୍ ଲିଟରେରୀ ମିଃ ଦାସ, ନଟ୍ ସାଇଣ୍ଟିଫିକ୍ ।

- ଓ ! ଇଜ୍ ଇଟ୍ ? ଆଇ ସି !

କିନ୍ତୁ କଥାଟା କ'ଣ ହୋଇପାରେ ? ଏମିତି ଗୋଟାଏ ମନ୍ତବ୍ୟ ? ଡାର୍କ ରୁମକୁ ଲାଗି ପାଖ ଲେବୋରେଟୋରୀର ସ୍କାଇଲାଇଟ ଖୋପ ଭିତରେ କେଉଁଠୁ ଗୁଡ଼ାଏ ପାରା ଆସି ବସା ବାନ୍ଧିଥାନ୍ତି । ରଙ୍ଗବେରଙ୍ଗର ପାରା । ନାଲି, ନେଳି, ଧଳା, ପାଉଁଶିଆ । କି ଯେ ଅସନା କରନ୍ତି ସେଗୁଡ଼ା । ଦାମୀ ଆପାରେଟ୍‌ସ ଉପରେ ଯାବତୀୟ ମଇଳା ! କାଠିକୁଟା; ଦଉଡ଼ା ଝାମ୍ପଡ଼ାରେ କ୍ଲାସ ବି କରିହୁଏନା । ସେମାନେ ଯେମିତି ଭାବନ୍ତି ଷ୍ଟ୍ରଗ୍ଲ ଫର ଏକଜିଷ୍ଟେନ୍ସ କେବଳ ତାଙ୍କରି ପାଇଁ । ରାବିସ୍ ! ବେଳେବେଳେ ତାଙ୍କର ମନେହୁଏ ଅଣ୍ଡିରା ପାରା କାଠିକୁଟା ବୋହି ଆଣିବା ବେଳେ ଯେମିତି ପ୍ରମାଣ କରିବାକୁ ଚାହାନ୍ତି ଜୀବନଟା କେବଳ ତାଙ୍କରି । ଆଉ ମେଟିଂ ଷ୍ଟ୍ରଗ୍ଲ ବେଳେ ! ଇସ୍ ପାରାଗୁଡ଼ା କେଡ଼େ ଅସଭ୍ୟ ସତେ... ଅନ୍ତତଃ ଏଇତକ କାଣ୍ଡଜ୍ଞାନ ତାଙ୍କର ରହିବା ଉଚିତ ଯେ, ସେଇଟା ଗୋଟାଏ କ୍ଲାସ । ସେଠି ବେଶ୍ କିଛିସଂଖ୍ୟକ ଭଦ୍ରବ୍ୟକ୍ତି ଏବଂ ମହିଳାଙ୍କର ଆତଯାତ ହୁଏ ଏବଂ ସେମାନେ ଖୁବ୍ ଗୁରୁତର କାର୍ଯ୍ୟ ନେଇ ସେଠି ବ୍ୟସ୍ତ । ଅଥଚ ସେଗୁଡ଼ା ଏମିତି ଭଲ୍‌ଗାର ଏଟ୍‌ମସ୍‌ଫିଅର ସେଠି ସୃଷ୍ଟି କରନ୍ତି... ବେଳେବେଳେ ତ ସେ କ୍ଲାସ ବନ୍ଦ କରିଦେବାକୁ ବାଧ୍ୟ ହୁଅନ୍ତି । (ଅବଶ୍ୟ କାରଣଟା ସେ ଅନ୍ୟଭାବେ ପ୍ରକାଶ କରନ୍ତି । ଯେମିତି ଆଜି କରେଣ୍ଟ ଅଫ ତ କାଲି ପାଣି ଶେଷ ବା ଅନ୍ୟ ଦିନେ ହି ଫିଲ୍‌ସ ଫିଭର୍‌ସ । କ'ଣ କରନ୍ତେ ଆଉ ? ଏଣେ ପାରାଗୁଡ଼ା ଏମିତି ହେଉଥିବେ ତ ତେଣେ କ୍ଲାସର ଝିଅପୁଅଗୁଡ଼ା ଚାହାଁଚାହିଁ ହୋଇ... ଛି... ଛି... ସେଦିନ ତ ହିମାନୀ ଦାମିକା ସ୍କେଲ୍‌ଟାକୁ ଦେଇଥାନ୍ତା ଶେଷ କରି । ସେ ଚାହିଁଛି ଅବିନାଶକୁ ଆଉ ଅବିନାଶ ଚାହିଁଛି ପାରା ଦି'ଟାକୁ । ଟୋକାଟା ଉପରେ କିନ୍ତୁ ତାଙ୍କର ଭୀଷଣ ଗ୍ରଜ୍ । ହରକ୍ୟୁଲିଆନ୍ ଫିଗର ଅଛି ବୋଲି ସେ ଯେମିତି ଭାବେ ଦୁନିଆଟାଯାକ ଇନ୍‌ଭେଲିଡ୍ । ସେ ଟୋକୀଟା କେଉଁ କମ୍ କି ? ସେ ତ ନିଜକୁ ମନେ କରେ ଇଣ୍ଡିଆନ୍ ଆଫ୍ରିଦିତି । ଏକ୍‌ସପେରିମେଣ୍ଟ ବେଳେ ଏତେଥର କା'ର ବା ଲୁଗା ଖସେ ଦିହରୁ । ଆଉ କାହାକୁ ବା ଏତେ ଗରମ ଲାଗେ ? ଅବିନାଶ ଏକ୍‌ସକ୍ୟୁଜ୍ ମାଗି ଶାର୍ଟର ମଝି ବୋତାମ ପର୍ଯ୍ୟନ୍ତ ନିଶ୍ଚୟ ଖୋଲିବ । 'କ୍ଷମା କରିବେ ସାର୍ । ରେସ୍ଲିଂ ବଡ଼ି କି ନା ? ଆଉ ହିମାନୀ ସବୁବେଳେ

ଲୁଗାଟା ଉପରେ ରାଗିବ । ତା'ର ବ୍ଲାଉଜ୍‌ର ଉପର ବୋତାମଟା କେମିତି କେଜାଣି ଖୋଲିଯାଏ (ଅନ୍ୟମାନଙ୍କର ଲୁଗା କେବେ କିମିତି ଖସିଲେ ବି ତ ତା' କାହିଁ ହୁଏନା) । ସେଦିନ କିନ୍ତୁ କଥାଟା କ୍ଲାଇମାକ୍‌ସକୁ ଚାଲିଗଲା । ପାରା ଦି'ଟା ପ୍ରାୟ ଦଶ ମିନିଟ୍ ଧରି ଘରସାରା ଉଡ଼ିବୁଲିଲେ । କ୍ଲାସଟା ପୂରା ବନ୍ଦ । ଆଉ ଶେଷରେ ନବାଗତା ଅଧ୍ୟାପିକା ମିସ୍ ଗାଡ୍‌ଗିଲ୍ ବି... ? ସ୍କାଇ ଲାଇଟ୍‌ରେ ଖୁମ୍ପାଖୁମ୍ପି ହେଉଥିବା ନେଳିଆ ପାରା ଦି'ଟା ପ୍ରତି ତାଙ୍କର ପ୍ରଲୁବ୍ଧ ଦୃଷ୍ଟି ସେ ସ୍ପଷ୍ଟ ଭାବରେ ଲକ୍ଷ୍ୟ କରିଛନ୍ତି । କ୍ଲାସଟା ସାରା ଚାପା ହସର ଲହରୀ । ଅବିନାଶ ଆଉ ହିମାନୀ ତ ଏକଦମ୍ ବେଦମ୍ । ନନ୍‌ସେନ୍‌ସ ! ସେ ଠିକ୍ କରିଛନ୍ତି । ପିଅନକୁ ଡାକି ସବୁଗୁଡ଼ାକ ପାରା ବସା ନେଇ ତଳେ ଫୋପାଡ଼ି ଦେବାକୁ କହି ସେ ଠିକ୍ କରିଛନ୍ତି । ତା' ପରଦିନଠୁଁ ସ୍କାଇଲାଇଟ୍‌ଗୁଡ଼ା ତାର ଜାଲି ଦେଇ ବନ୍ଦ କରି ସେ ଠିକ୍ କରିଛନ୍ତି । କ୍ଲାସରୁମ୍‌ର ପରିବେଶଟା ତ ଆଉ ୱାଇଲ୍‌ଡ ନୁହେଁ । ସେଇଟା ଏକାଡେମିକ୍ । ମିସ୍ ଗାଡ୍‌ଗିଲ ତାଙ୍କୁ ଯଦି ସେଥିପାଇଁ ଆପାଥେଟିକ୍ କୁହେ.. ଦେଟ୍ ଡଜ୍'ଣ୍ଟ' ମେଟର । କିନ୍ତୁ ହଠାତ୍ ଯେମିତି ଡଃ ଦାସଙ୍କର ଅସ୍ଥିସାର ଶରୀରଟା ଅନୁଶୋଚନାରେ ଜରିଗଲା । ମିସ୍ ଗାଡ୍‌ଗିଲ୍ ତା'ପରେ ରିଜାଇନ୍ ଦେଇ ଚାଲିଯାଇଥିଲା । କେଉଁ ଗୋଟାଏ କେରଳୀଆନ୍ ଇଞ୍ଜିନିୟର ସହିତ ତା'ର ବିବାହ ହୋଇଥିଲା ଅଚାନକ । ରେଜିଷ୍ଟାର୍ଡ଼ ମେରେଜ୍ । ନୋ ପାର୍ଟି, ନୋ ଇନ୍‌ଭିଟେସ୍ନ । କେଇ ସପ୍ତାହ ପରେ ଖଣ୍ଡିଏ ଇନ୍‌ଲ୍ୟାଣ୍ଡ ପାଇଥିଲେ ସେ । ମିସ୍ ଗାଡ୍‌ଗିଲ୍ ଲେଖିଥିଲା କାଶ୍ମୀରରୁ- ହୋଲ ସମରଟା ସେମାନେ ସେଇଠି କଟେଇବେ । ଝୀଲ ହ୍ରଦ ଆଉ ଝେଲମ୍ ନଦୀର ନୀଳ ଜଳରେ ଅଗଣିତ ତରଙ୍ଗ । ସନ୍ଧ୍ୟାର ଆକାଶରେ ଉଡ୍ଡୀୟମାନ ଅସଂଖ୍ୟ ପାରାବତ୍ର ଦମ୍ପତି ଏବଂ ଗଛରେ ଗଛରେ ଫଳ, ଲତାରେ ଲତାରେ ଫୁଲ, ଆଖିରେ ଆଖିରେ ଢେଉ । ଡୋଣ୍ଟ ବି ଆପାଥେଟିକ୍ ମି. ଦାସ । ଲାଇଫ୍ ଇଜ୍ ଲିଟେରାରୀ ନଟ୍ ସାଇଣ୍ଟିଫିକ୍ । ଗୋଟିଏ ଚାବୁକ୍ ମାଇଲା ପରି ଲାଗିଲା ତାଙ୍କୁ । ଚିଠିଟାକୁ ଟିକି ଟିକି କରି ଚିରି ସେ ତଳକୁ ଫୋପାଡ଼ି ଦେଲେ ଲେବୋରେଟୋରୀର ଛାତ ଉପରୁ । ଦମକା ଦମକା ପବନ ଭଉଁରି ଖେଳି ଟୁକୁରାଗୁଡ଼ାକୁ ଏଣେତେଣେ ବିଞ୍ଚିଦେବା ପର୍ଯ୍ୟନ୍ତ ଚାହିଁରହିଲେ ତାକୁ ଏବଂ ପାଦେ ପାଦେ କରି ଫେରିଆସିଲେ ତଳକୁ , ଡାର୍କରୁମ୍‌ର ପରିଚ୍ଛନ୍ନ ଏକାଡେମିକ ପରିବେଶ ଭିତରେ କେଉଁଠି କେଉଁ କୋଣରେ ଯେପରି ସେ ଶୁଣିପାରୁଥିଲେ ଅଦୃଶ୍ୟ ଦୁଇଟା ପାରାର ଭଲଗାର କଲ୍ । ଇଣ୍ଟଲରେବ୍ଲ ! ଇଣ୍ଟଲରେବ୍ଲ । ଡଃ ଦାସ ବିଛଣା ଉପରେ ଶୋଇବାକୁ ଚେଷ୍ଟା କରି ବିଫଳ ହେଲେ । ବାହାରେ ସୂର୍ଯ୍ୟ ଅସ୍ତ ଯାଉଥିଲା ଏବଂ ଭିତରେ ଅନ୍ଧକାର ଏଠିସେଠି ଉଙ୍କି ମାରୁଥିଲା । ଝରକା ସେପଟେ ବଗିଚାର ଟିକିଏ ବାଁ ପଟକୁ ସେଇ ବରକୋଳି ଗଛଟାରେ କଷିଗୁଡ଼ା ଲଦି ହେଇପଡ଼ିଛି । ଡଃ ଦାସ ସତରେ ଖୁବ୍ ଆଶ୍ଚର୍ଯ୍ୟ ହୋଇଗଲେ । ହେଇ ସେଦିନ ତିନି କି ଚାରି ବର୍ଷ ହେବ ଯେଉଁ ବର୍ଷ ଏଇ ସଲିଚିଉଡ୍ ଭିତରେ

ଘରଟା ସେ ତିଆରି କଲେ, ସେଥର ଏମିତି ଆପେ ଉଠିଥିବା ଏଇ ଗଛଟାକୁ ସେ ନ କାଟି ଛାଡ଼ି ଦେଇଥିଲେ । ସେଇଟା ଯା ଭିତରେ ଏତେ ବଢ଼ିଗଲାଣି ? ପୁଣି ଏତେ କଷି ବି ତା ଦିହରେ ! ଅଥଚ... ଅଥଚ ସେ ? ''ୟୁ ଇଣ୍ଡିୟାନ୍‌ସ ଗ୍ରୋ ଓଲ୍ଡ ଆଫ୍‌ଟର ଥାର୍ଟି ।'' କଥାଟା ହସି ହସି ସେଦିନ କହିଥିଲା ମିସ୍ ବୁଚାର୍ । ଟରଣ୍ଟୋ ଇଉନିଭରସିଟିର କାନାଡ଼ିଆନ୍ ରିସର୍ଚ୍ଚ ସ୍କଲାର ମିସ୍ ମାର୍ଗାରେଟା ବୁଚାର । ଡାଃ ଦାସ ଘର ଭିତରେ ବାଁ ପଟ କାନ୍ଥକୁ ଚାହିଁଲେ । କାଚ ବନ୍ଧେଇ ବହୁ ଚିତ୍ରପଟ ଭିତରେ ଟରଣ୍ଟୋରେ ତାଙ୍କ ଦୀର୍ଘକାଳ ରହଣିର ବହୁ ବିଗତ ସ୍ମାରକ । ମିସ୍ ବୁଚାର- ସୁବର୍ଣ୍ଣକେଶୀ, ନୀଳନୟନା, ତୁଷାର ପ୍ରଭା ମାର୍ଗରେଟା ବୁଚାରର ଆଗମନ ପରି ପ୍ରସ୍ଥାନଟା ବି ଥିଲା ତାଙ୍କ ଜୀବନରେ ଆକସ୍ମିକ । ପ୍ରଥମ ଦେଖାରେ ହିଁ ମାର୍ଗାରେଟା କହିଥିଲେ- ''ନିଉକ୍ଲିଆର ଫିଜିକ୍‌ସ ନେଇ ଏମିତି ଏକ ଥରୋ ଷ୍ଟଡ଼ି ଖାଲି କାନାଡ଼ାର କାହିଁକି ୱାର୍ଲଡରେ ବି ରେୟାର୍ ମିଃ ଦାସ । ଆଇ ଉଇସ୍ ଏ ବ୍ରାଇଟ୍ ଫିଉଚର ଅପ୍ ୟୋର୍ସ ।'' ଅପ୍ରତ୍ୟାଶିତ ଏଇ ପ୍ରଗଲ୍‌ଭ ସ୍ୱାଗତରେ ମିଃ ଦାସ ବିମୂଢ଼ ହୋଇଯାଇଥିଲେ । ''କିମିତି ମୁଁ ଏତେ କଥା ଜାଣିଲି ଭାବୁଛନ୍ତି ନା ? ମିସେସ୍ ମେକ୍‌କେଅନ୍ - ଆପଣଙ୍କ ସୁପରଭାଇଜରଙ୍କ ସହିତ ମୋର ଆଳାପ ଅଛି । ମୁଁ ଅବଶ୍ୟ ଆପଣଙ୍କ ଡିପାର୍ଟମେଣ୍ଟର ନୁହେଁ । ପାରାସାଇକୋଲୋଜିର ଷ୍ଟୁଡେଣ୍ଟ । ମିସେସ୍ ମେକ୍‌କେଅନ୍ କିନ୍ତୁ ଆପଣଙ୍କର ଅସମ୍ଭବ ପ୍ରଶଂସା କରନ୍ତି । ଆପଣଙ୍କ ଜିଲ୍, ଟେନାସିଟି, ପାର୍ସେଭରେନ୍‌ସ ସବୁଗୁଡ଼ାକ ତାଙ୍କୁ କେମିତି ମିଥିକ୍ ମିଥିକ୍ ଲାଗେ ।'' ଆଶ୍ଚର୍ଯ୍ୟ ! ସେଦିନ ଲାବୋରେଟୋରୀ ଭିତରକୁ ବେପରୁଆ ଭାବରେ ପଶିଆସି ତାଙ୍କୁ ନିମନ୍ତ୍ରଣ ପତ୍ର ଦେଇଗଲା । ଆଜି ଆମ ଡିପାର୍ଟମେଣ୍ଟର ସ୍ପ୍ରିଂ କାର୍ଣ୍ଣିଭାଲ । ମୋର ଗୋଟାଏ ଡାନ୍‌ସ ଅଛି । ଇଣ୍ଡିଆନ୍ ଇମିଟେସ୍ନ । ଯିବେ ନିଶ୍ଚୟ ।'' ଆଉ ପାଖରୁ ନିଗ୍ରୋ ସ୍କଲାର୍‌ଜଣକ ମୁଣ୍ଡ ଟେକିଲେ- ''ୟୁ ଇଣ୍ଡିଆନ୍‌ସ ଆର ଲକି ସାର୍ । ଡୋଣ୍ଟ ଲିଭ୍ ଦି ଚାନ୍‌ସ । ସି ଇଜ୍ ଦି ଓନ୍‌ଲି ଡଟର ଅପ୍ ଏ ମିଲିଅନୋଆର୍ ।'' ତାଙ୍କର ଇଚ୍ଛା ହେଲା, ଆଚ୍ଛାକରି ଗୋଟାଏ ଚଟକଣା ବସେଇ ଦିଅନ୍ତେ ଲୋକଟାର ଗାଲରେ ।

ସେଦିନ ଓଣ୍ଟାରିଓ ହ୍ରଦର କୂଳେ କୂଳେ ନବବସନ୍ତର ଉନ୍ମାଦନା । ଏଠି ସେଠି ସ୍ପ୍ରିଂ କାର୍ଣ୍ଣିଭାଲ୍‌ର ବିପୁଳ ଆୟୋଜନ ଭିତରେ ଓଣ୍ଟାରିଓର ନୀଳ ଜଳ ଏଲମ୍ ଆଉ ଅଲିଭର ସବୁଜ ଗନ୍ଧରେ ଭରିଯାଇଥିଲା । କେଉଁଠି ଗୋଟିଏ ପାର୍କ ଭିତରେ ଅଲ୍‌ମନ୍ଦ ଗଛକୁ ଲକ୍ଷ୍ୟ କରି ମାର୍ଗାରେଟା କହିଥିଲା- ହାଉ ଷ୍ଟ୍ରେଞ୍ଜ ! ଗଛଟା ମାତ୍ର ଏଇ ବର୍ଷର । ଅଥଚ ଦେଖୁଛନ୍ତି କେତେ ଫୁଲ ଯା ଦିହରେ । ଗଛଟା ସତରେ ଛୋଟ ଛୋଟ ପିଙ୍କ୍ କଲର୍ ଫୁଲ ଭିତରେ ଲୁଚିଯାଇଥିଲା । ବସନ୍ତର ଆବାହନୀ ଜଣେଇ ଅଲମନ୍ଦ ଫୁଲ ତାର ପସରା ମେଲିଛି । ଗନ୍ଧହୀନ ସେଇ ଫୁଲର ପସରା ଭିତରେ ତାଙ୍କୁ ଜଣାଗଲା ସମଗ୍ର ବସନ୍ତଟା ଯେପରି ଗନ୍ଧହୀନ ହୋଇଯାଉଛି ଏବଂ ବିଗତ ଅନେକ ଗନ୍ଧହୀନ

ବସନ୍ତର ମୋହର ତାଙ୍କ ଦିହର ଚାରିଆଡ଼େ ବସିଯାଉଛି । ''ଡୋଣ୍ଟ୍ ମାଇଣ୍ଡ ମି. ଦାସ ! କିନ୍ତୁ କ'ଣ ଜାଣନ୍ତି ଭାରତୀୟମାନଙ୍କର ଏଇ ଫିଲୋସଫିକ୍ ମୁଡ୍‌ଟା ମୁଁ ଖୁବ୍ ଭଲପାଏ ।'' କେଉଁଠୁ ଗୋଟାଏ ବାଓ୍ୱାର ଭିତରୁ ଦୁଇଟା ହେରନ୍ ଉଡ଼ିଗଲେ ଆକାଶକୁ । ସୁଦୂର ନୀଳ ଆକାଶରେ ତୁଷାର ଧବଳ ପକ୍ଷୀ ଦୁଇଟା ଆଗପଛ ହୋଇ ସଂପୂର୍ଣ୍ଣ ନିଶ୍ଚିହ୍ନ ହୋଇଯିବା ପର୍ଯ୍ୟନ୍ତ ମାର୍ଗାରେଟ ଚାହିଁରହିଲା ସେଇଆଡ଼େ । ''ହେରନ୍‌ଗୁଡ଼ା ସତେ କେତେ ଇନୋସେଣ୍ଟ ! ଜାଣନ୍ତି ପିଲାଦିନେ ମୁଁ ଡ୍ରାଗନ୍ ପକ୍ଷୀ କଥା ଶୁଣିଥିଲି । କିନ୍ତୁ କାହିଁକି କେଜାଣି ଏଇ ହେରନ୍‌ଗୁଡ଼ା ଦେଖିଲେ ମୋର ମନେ ପଡୁଥିଲା ଡ୍ରାଗନ୍ । ମୁଁ ଭୟ ପାଉଥିଲି । କିନ୍ତୁ ସେଥର ଆମ କଣ୍ଟ୍ରିହାଉସ୍‌ର ବଗିଚାରେ ବୁଲୁଥାଏଁ, ଦେଖିଲି ଏମିତି ହେରନ୍ ଦୁଇଟା ଉଡ଼ାଉଡ଼ି ହେଉଛନ୍ତି । କ'ଣ ଯେମିତି ମୋର ହେଲା । ସେଇଦିନଠୁଁ ମୁଁ ଅହେତୁକଭାବେ ଭଲ ପାଉଛି ଏଗୁଡ଼ା ।'' ସେ ଅନୁଭବ କଲେ ମାର୍ଗାରେଟ ତାଙ୍କ ହାତ ଧରି ଚାଲୁଛି । ମାର୍ଗାରେଟର ହାତ ଭିତରେ ତାଙ୍କର ହାତଟା ଖୁବ୍ ଝାଳେଇଗଲା ପରି ତାଙ୍କୁ ଲାଗିଲା । ତା ହାତର ଶୀତଳ ସ୍ପର୍ଶ ଭିତରେ ସେ ଅନୁଭବ କଲେ ତାଙ୍କର ଧମନୀ ଭିତର ରକ୍ତ ପ୍ରବାହର ଗତି ଯେପରି ବହୁଗୁଣ ବଢ଼ିଯାଇଛି । ସେ ହଠାତ୍ ମାର୍ଗାରେଟକୁ ଚାହିଁଲେ । ସେତେବେଳେ ସୂର୍ଯ୍ୟ ଅସ୍ତ ଯାଉଥିଲା ଏବଂ ଓ୍ୱେଲ୍ ପେଣ୍ଟେଡ଼ ମୁହଁ ଉପରେ ତାର କେଇ ମେଞ୍ଚା ରକ୍ତର ଝଲକ ଉକୁଟିଉଠି ମଉଳି ଯାଉଥିଲା । ସେ କିନ୍ତୁ ଖୁବ୍ ସ୍ୱାଭାବିକ ଭାବେ ଚାଲୁଥିଲା । ''ଆଇ ନୋ ଇଉ ମି. ଦାସ । ମୁଁ ଆପଣଙ୍କୁ ଦେଖିବା ଦିନଠୁଁ ଇ ଜାଣିପାରିଛି । ସାଇକୋଲୋଜି ଷ୍ଟୁଡେଣ୍ଟ କି ନା ! ବଟ୍ ହୋପ୍, ଆଇ କେନ୍ ଚେଞ୍ଜ ୟୁ ।'' ମି. ଦାସ ହଠାତ୍ ଯେମିତି କେଉଁଠୁ ଗୋଟାଏ ଫୁଲର ସୁରଭି ଆଘ୍ରାଣ କଲେ । ସେତେବେଳେ ଗୋଧୂଳିର ଧୂସର ଆକାଶରେ ଦଳ ଦଳ ହେରନ୍ । ହ୍ରଦ ଜଳରେ ସଦ୍ୟ ଆଲୋକିତ ଅସଂଖ୍ୟ ରଶ୍ମିର ବିଚ୍ଛୁରଣ- ଆଉ ଦିନେ କଣ୍ଟ୍ରିହାଉସ୍‌ରେ ବୋଗେନ୍‌ଭିଲିଆ ସନ୍ଧ୍ୟା ଏଇମାତ୍ର ମଉଳିପଡ଼ିଥାଏ । ଚାରିପାଖର ଗହମ ଆଉ ଆରାରୁଟ୍ କ୍ଷେତରେ ବିଛେଇ ହୋଇ ପଡୁଥିବା ହାରଭେଷ୍ଟ୍‌ର ଗନ୍ଧ ଭିତରେ ମାର୍ଗାରେଟର ଇଭିନିଂ ଗାଉନ୍ ତଳୁ ଉନ୍ମୁକ୍ତ ଶରୀରଟା ଆସ୍ୱାଭାବିକ ଭାବେ ସଜୀବ ହୋଇଉଠିଥାଏ । ସେ କିନ୍ତୁ ନିବିଷ୍ଟ ହୋଇ ଟି.ଭି. ସେଟ୍‌ରେ ହଲିଉଡ଼ର ପ୍ରୋଗ୍ରାମ ଦେଖୁଥାନ୍ତି । ମାର୍ଗାରେଟ ହଠାତ୍ ସେଟ୍‌ଟାକୁ ଅଫ୍ କରିଦେଲା । ''ଧେତ୍ ଓଲ୍‌ଡ ଫେଶନ୍‌ଡ ।'' ଏଗୁଡ଼ାକଙ୍କର ସବୁକିଛି ଯେମିତି କମ୍ପ୍ୟୁଟର ହେବାକୁ ଲାଗିଛି । ଜାଣନ୍ତି, ଏଇ କେଇଦିନ ହେଲା ଇଣ୍ଡିଆନ୍ ମ୍ୟୁଜିକ୍ ପ୍ରତି ମୋର ଆସକ୍ତି ଖୁବ୍ ବଢ଼ିଯାଇଛି । ଆପଣ ଯା କହନ୍ତୁ ନା କାହିଁକି ଆପଣଙ୍କ ଦେଶର ସବୁ କିଛିରେ ଗୋଟାଏ ଜୀବନ ଅଛି । ହିଅର ଇଟ୍'ଜ୍ ଅଲ୍ ସୁପର ଫିସିଆଲ୍ । ମାର୍ଗାରେଟର ଏମେରାଲ୍‌ଡ କଲର ଗାଉନ୍ ତଳୁ ତାର ମର୍ମର ଶୁଭ୍ର ଶରୀରର ନିଟୋଳତା ତାଙ୍କୁ ସେଦିନ ମେସମେରାଇଜ୍‌ଡ୍ କରିଦେଇଥିଲା । ''କ'ଣ ଦେଖୁଛନ୍ତି ?''

ମାର୍ଗାରେଟ ପଚାରିଲା । ''ଦି ଭିର୍ଜିନ ମଦର ।'' କେମିତି ଅସ୍ୱାଭାବିକ ଭାବେ ସେ ଉତ୍ତରଟା ଦେଲେ । ମାର୍ଗାରେଟ ହସି ହସି ଗଡ଼ିଗଲା ଡିଭାନ୍ ଉପରେ । ''ଆପଣ ଏବେ ବି ରିନାଁସାସରେ ମିଃ ଦାସ । ଯିବେ ତ ଆହୁରି ଦୂରକୁ ଯାଆନ୍ତୁ । ଏକଦମ୍ ହୋମରିକ୍ ଗ୍ରୀସ୍ । ସି.ଏ. କ୍ଲିଟେମ୍ ନେଷ୍ଟ୍ରା । ଏ ହେଲେନ୍, ଏ କିର୍କୀ ଇନ୍ ମି । ଡୋଣ୍ଟ ବି ସିଲି ମିଃ ଦାସ !'' ମାର୍ଗାରେଟର ଗାଉନ୍‌ଟା ଅନୁଚିତ ଭାବେ ଟେକି ହୋଇଯାଇଥିଲା ଉପରକୁ । ତାଙ୍କର ହଠାତ୍ ମନେ ହେଲା ମାର୍ଗାରେଟ ଯେପରି ଗ୍ରୀକ୍ ମିଥ୍‌ର ଗାଲାତିଆ । ସେ ଉଠିଆସିଲେ ମାର୍ଗାରେଟର ମୁଣ୍ଡ ପାଖକୁ । ହାତରେ ତା'ର ମୁହଁ ଉପରେ ବିଞ୍ଚି ହୋଇ ପଡ଼ିଥିବା ସିଲ୍‌କନ୍ ବାଳଗୁଡ଼ାକୁ ଏରେଞ୍ଜ କରୁ କରୁ ଧୀରେ ଧୀରେ ତାର କାନ ପାଖରେ କହିଲେ- କିର୍କୀ ନୁହେଁ, କ୍ଲିଟେମ୍‌ନେଷ୍ଟ୍ରା ନୁହେଁ, ଆଇ ସି ଏ ଗାଲାତିଆ ଇନ୍ ୟୁ ମାର୍ଗା... ଶିଳ୍ପୀର ନିହାଣ ମୁନରେ ଜୀବନ୍ତ ପାଷାଣୀକନ୍ୟା ତୁମେ ।'' ଇଜ୍ ଇଟ୍ ? ମାର୍ଗାରେଟା ଯେପରି ଝଡ଼ର ବେଗରେ ଦୋହଲି ଉଠିଲା- ''ହାଉ ଫର୍ଚୁନେଟ୍ ଆଇ ଏମ୍ ! ସି...ସି... ହାଉ ୟୁ ହେଭ୍ ଗଟ୍ ଚେଞ୍ଜ୍‌ଡ ମି. ଦାସ । ଓ... ମାଇ ହେଭେନ୍‌ଲି ପିଗ୍‌ମେଲିଅନ୍ ! ...'' ତା'ର ଦେହର ଉତ୍ତାଳ ଲହରୀ ଭିତରେ ମନେ ହେଲା ତାଙ୍କର ଦେହଟାର ଯେପରି କେଉଁଠି ସିପ୍‌ରେକ୍ ହୋଇଯିବ । ସେଇଦିନ ତାଙ୍କ ଜୀବନରେ ପ୍ରଥମ କରି ସେ ଡ୍ରିଙ୍କ୍ କରିଥିଲେ । ଅନଭ୍ୟସ୍ତ ଶୈଳୀରେ ଟୁଇଷ୍ଟ ଆଉ ବାଲେ ନାଚିଥିଲେ । ପ୍ରଥମ ଥର ପାଇଁ ମାର୍ଗାରେଟର କାନେ କାନେ ଗାଇଥିଲେ କେତେଟା ୱାଇଲ୍‌ଡ ରେପ୍‌ସଡ଼ି । ଅଥଚ... ଅଥଚ... ଡଃ ଦାସଙ୍କର ଅଥର୍ବ ଶରୀରଟା ଉତ୍ତେଜନାରେ ଥରୁଥିଲା । ଏଇମିତି ଅନେକ ଗୋଧୂଳି ଆଉ ସନ୍ଧ୍ୟା ବିତେଇଦେଲା ପରେ ବି ମାର୍ଗାରେଟ ଲେଖିପାରିଥିଲା- ''ଇୟୋର ଫ୍ରିଜିଡ଼ିଟି ଇଜ୍ ଇନ୍‌କ୍ୟୁରେବ୍ଲ ମି. ଦାସ ।''

ଶେଷ ହେମନ୍ତର ସନ୍ଧ୍ୟା ବହୁ ବେଳୁ ଉତ୍ତୀର୍ଣ୍ଣ ହୋଇଯାଇଥିଲା । ବାହାରେ ଆଉ ଭିତରେ କୁଢ଼ କୁଢ଼ ହୋଇ ଜମାଟ ବାନ୍ଧୁଥିବା ସଲିଚିଉଡ୍ ଆଉ ଅନ୍ଧକାର ଭିତରେ ଡଃ ଦାସଙ୍କର ଅଥର୍ବ ଦେହଟା ପେଷି ହୋଇଯାଉଥିଲା ଏବଂ ସେଇ ପିଷ୍ଟ ଦେହଟାକୁ ପୋଷ୍ଟମର୍ଟମ କରିବା ପାଇଁ କେତେଟା ଅତିକାୟ ଡ୍ରାଗନ୍ ପଙ୍ଖ ଝାଡ଼ି ଝାଡ଼ି ହେମନ୍ତର କୋହଲିଆ ପବନ ସହିତ ଗହ ଗହ ହୋଇ ଝରକା ବାଟେ ଭିତରକୁ ପଶି ଆସୁଥିଲେ ।

[୧୯୭୧]

# ନୀଳନାନୀ ଓ ସାଳିଆ ନଈର ସୁନା ଇଲିଶି

ରାହାସ ପୂନେଇଁ ମାଛି ଅନ୍ଧାରରୁ କଥାଟା ଗାଁରେ ବିଜୁଳି ଭଳି ପ୍ରଘଟ ହୋଇଗଲା- ନୀଳନାନୀର ମଲା ଦେହଟା ଗଣ୍ଡେଶ୍ୱର ମହାଦେବଙ୍କ ଘାଟରେ ଭାସୁଛି । ରାତି ଚାରିଟାରୁ ସେଦିନ ଘାଟରେ ଭାରି ଭିଡ଼ । ସେ ସନ ମଳମାସ ପଡ଼ିଥାଏ । କାର୍ତ୍ତିକ ପୂନେଇଁ ପଡ଼ିଲା ମଗୁଶୀରର ମଝାମଝି । ରାତି ଚାରିଟାକୁ ଭାରି ଶୀତ । ଗାଁର ଅଧିକରୁ ବେଶି ଲୋକ ପଞ୍ଚକ ଗାଧୁଆବାଲା । କଂପିଟିସନ୍ କରି ଗାଧୁଆ ଚାଲିଥାଏ ସ୍କୁଲପିଲା ଆଉ ପ୍ଲସ-ଟୁ କଲେଜ ପିଲାଙ୍କ ଭିତରେ । ସ୍କୁଲ ପିଲାଙ୍କ ଶଙ୍ଖ ଯଦି ଆଗେ ବାଜିଛି ଆଜି ରାତି ପାହାନ୍ତାକୁ, କଲେଜ ପିଲାଙ୍କ ହୁଇସିଲ ବାଜୁଛି କାଲି ରାତି ତିନିଟାକୁ । ହେଲେ ସବୁ କମ୍ପିଟିସନ୍ ଶେଷ ହୋଇଗଲା ପୂନେଇଁ ଦିନ । ବୁଢ଼ାବୁଢ଼ୀଙ୍କଠାରୁ ଟୋକାଟୋକୀଙ୍କ ପର୍ଯ୍ୟନ୍ତ ସଭିଏଁ ସେଦିନ ଏକଜୁଟ । ଗଣ୍ଡେଶ୍ୱରଙ୍କ ଘାଟରେ ସେଦିନ ବିରାଟ ମେଳା । ବୋଇତ ବନ୍ଦାଣ ସାଙ୍ଗକୁ ବିରାଟ ବାଲିଯାତ୍ରା । ସାଳିଆ ନଈର ପୂର୍ବ ପଟରେ ମହାଦେବଙ୍କ ମନ୍ଦିର । ପଶ୍ଚିମ ପଟରେ ବସେ ଯାତ୍ରା । ସାଳିଆ ନଈ ଗଣ୍ଡେଶ୍ୱର ମହାଦେବଙ୍କ ପାଖରେ ହୋଇଛି ଉତ୍ତରବାହିନୀ । ଶାସ୍ତ୍ରରେ ଅଛି ନଈ ଯେଉଁଠି ଉତ୍ତରବାହିନୀ ହୁଏ ସେଠି ହୁଏ ପବିତ୍ର ତୀର୍ଥ । ସ୍ନାନ କଲେ ମହାପୁଣ୍ୟ । କାଶୀରେ ଗଙ୍ଗା ନଈ ହେଇଛି ଉତ୍ତରବାହିନୀ । ସେଇଥିପାଇଁ ଦଶାଶ୍ୱମେଧ ଘାଟ, ମଣିକର୍ଣ୍ଣିକା ଘାଟର ଏତେ ମାହାତ୍ମ୍ୟ । କୋଉ କାଳର କଥା । ସାଳିଆ ନଈ ଉତ୍ତର ବାହିନୀ ହୋଇଥିବା ଏଇ କଣଟା କୂଳରେ ଥାଏ ଘନାଜଙ୍ଗଲ । ଗାଁଗଣ୍ଡା କିଛି ନ ଥାଏ । ଆକାଶରେ ହର ପାର୍ବତୀ ଉଡ଼ି ଯାଉଥାନ୍ତି । ପାର୍ବତୀ ତଳକୁ ଚାହିଁଦେଲେ । ତାଙ୍କୁ ଏଇ ନଈ କଣର ଜଙ୍ଗଲଟା ଭାରି ଭଲ ଲାଗିଲା । ଫଗୁଣ ମାସ । ଜାଗର ଯାଇଥାଏ ନଗଦା ନଗଦି । ଫଗୁ ଦଶମୀ ପାର ହୋଇ ତିଥି ହେଇଥାଏ ଏକାଦଶୀ । ତୋଫା ଜହ୍ନ ଆଲୁଅ ପଡ଼ିଥାଏ । ନଈ ପାଣିରେ ଜହ୍ନ ଚିକିମିକି ମାରୁଥାଏ । ଯେମିତି ହସି ହସି ହର ପାର୍ବତୀଙ୍କୁ ବିନତି କରୁଥାଏ- ମା' ବାବାଙ୍କୁ ନେଇ ଘଡ଼ିଏ ବସନ୍ତେ ନାହିଁ ନଈ କୂଳରେ ? ଏଣେ ଜଙ୍ଗଲରୁ ମହକି ଉଠୁଥାଏ କେତକୀ ଫୁଲ ସାଙ୍ଗକୁ ମଧୁମାଳତୀ ଫୁଲର ମନମତାଣିଆ, ଦିହ ଉଲୁସିଆ ବାସ୍ନା । କୋଉଠୁ କେଜାଣି, ଭୋର ହେଲା ଭାବି କୋଇଲିଟାଏ ରାବି ଦେଲା ସେତିକିବେଳେ- କୁହୁ, କୁହୁ, କୁହୁ... ପାର୍ବତୀ ଲୋଭ ସମ୍ଭାଳିପାରିଲେ ନାହିଁ । କହିଲେ, ହଇହୋ ଶୁଣୁଛ, କି ସୁନ୍ଦର ଜହ୍ନରାତି, କେତକୀ ଫୁଲର ବାସନା ସାଙ୍ଗକୁ ନଈଟା ଉତ୍ତରବାହିନୀ । ଆସମ ଘଡ଼ିଏ ବସି ଥକା ମେଣ୍ଟାଇ

ନବା । ହର ତ ଭୋଳା । ସବୁକଥାରେ ପାର୍ବତୀଙ୍କର ହଁ ବୋଲା । ସାଙ୍ଗେ ସାଙ୍ଗେ ରାଜି ହୋଇଗଲେ । ଆକାଶରୁ ଓହ୍ଲେଇ ଆସି ନଈର ପୂର୍ବ କୂଳରେ ବସିଗଲେ ଘଡ଼ିଏ । ଭୋଳା ତ ଭାରି ପ୍ରକୃତି ରସିକ । ସେ ଶୋଭା ଦେଖୁଛନ୍ତି । ପାର୍ବତୀ ଲୋଭ ସମ୍ଭାଳି ନ ପାରି କେତକୀ ଫୁଲ ଅନିଷାରେ ବାହାରିଗଲେ । କଉଁଠୁ ପାଖୁଡ଼ାଟାଏ ହେଲେ ଆଣି ଗଭାରେ ଖୋଷି ଦେବେ । କ'ଣ କରିବେ ? ଏଇ ଫୁଲଟା ପ୍ରତି ତାଙ୍କର କାହିଁକି ଭାରି ଲୋଭ । ଶିବ ସେ ଫୁଲରେ ରସନ୍ତି ନାହିଁ । ତାଙ୍କୁ ଏଇ କଣ୍ଟା ଫୁଲଗୁଡ଼ା ଜମା ଭଲ ଲାଗେ ନାହିଁ । ଦିହରେ ଫୋଡ଼ି ହେଇଯାଏ । ହେଲେ ଖାସ୍ ପାର୍ବତୀଙ୍କ ପାଇଁ ଜାଗର ଦିନଟାରେ ଏହି ଫୁଲ ପାଇଁ ତାଙ୍କର ବଡ଼ ସଉକ । ପାର୍ବତୀ ତ ଯାଇଛନ୍ତି ଫୁଲ ଖୋଜି । ହଠାତ୍ ଶିବ ଖୋଜିଲେ ପାର୍ବତୀ କାହିଁ ? ତାଙ୍କର ତ ହଲପ ଶୁଖିଗଲା । ମୋ ପାର୍ବତୀ ଗଲା କୁଆଡ଼େ ? ପାର୍ବତୀ, ପାର୍ବତୀ ବୋଲି ଦି ଡାକ ମାରିଦେଇ ନିଶାରେ ଡେଇଁ ପଡ଼ିଲେ ନଈକୁ । ହନ୍ତାଳି ଦେଇଗଲେ ଯେ ଗୋଟାଏ ବିରାଟ ଗଣ୍ଡ ହୋଇଗଲା ନଈରେ । ନଈ ତ ଭୟରେ ଥରହର । ଏତେବଡ଼ ଗଙ୍ଗା ନଈଟା ଯଉଁଠି ହରଙ୍କ ଜଟାରେ ଯଉଁଠି ଲୁଚିଯାଇଛି ସେଠି ସାଳିଆ ନଈଟା ବା କି ଛାର । ପ୍ରାଣ ଭୟରେ ମା-ମା ରକ୍ଷା କର ରକ୍ଷା କର ବୋଲି ଡାକିଲା । ପାର୍ବତୀ ଶୁଣି ଦଉଡ଼ି ଆସିଲେ । ତରତରିଆରେ କେତକୀ ଫୁଲଟାଏ ଛିଡ଼େଇ ନେଇଛନ୍ତି ଯେ ଚମ୍ପାକଢ଼ି ଆଙ୍ଗୁଳିରେ କଣ୍ଟା କେତେଟା ପଶିଯାଇ ବିନ୍ଧୁଛି । ଘାଟକୁ ଆସି ଦେଖିଲାବେଳକୁ ନଈ ଭିତରେ ତାଣ୍ଡବ ନୃତ୍ୟ । ଅତରଛିଆ କହି ପକେଇଲେ- ମଲା, ମଲା ଇଏ କ'ଣ ମ ? ଘଡ଼ିଏ ରହିପାରିଲ ନାହିଁ ଯେ ଏ କାଣ୍ଡ ! ବିଚାରୀ ନଈଟାକୁ ସମୁଦ୍ର କରିଦେବ ନା କ'ଣ ? ଆସ ଆସ । ତୁମକୁ ଘଡ଼ିଏ ବସିବାକୁ କହି ବଡ଼ ଭୁଲ କରିଛି ବାବା । ତେଇଁକୁ ଏଇ ନିଆଁଲଗା କେତକୀ ଫୁଲଟା କି ମୋତେ ବାୟାଣୀ କରିଦେଲା । ହେଲା, ହେଲା ଏବେ ଉପରକୁ ଉଠିଆସିଲ । ଆମ ବାଟରେ ଆମେ ଉଡ଼ିଯିବା । ଏତିକି ଯିମିତି ଶୁଣିଛନ୍ତି ଶିବ ତ ସାଙ୍ଗେ ସାଙ୍ଗେ ଥଣ୍ଡା । ହସି ହସି ଉଠିଆସିଲେ ଉପରକୁ । ପାର୍ବତୀଙ୍କ ହାତ ଧରି କହିଲେ, କୁଆଡ଼େ ଚାଲିଗଲ ମ, ତୁମେ ମୋତେ ବସେଇ ଦେଇ ? ଓହୋ, ମୋର ତ ଜ୍ଞାନ ହଜିଗଲା । ଚାଲ, ଚାଲ ପଳେଇବା । ରାତି ପାହି ଆସିଲାଣି । ଉପରକୁ ଉଠୁ ଉଠୁ ଶିବ କହିଲେ, ପାର୍ବତୀ ଆଜିକାର ଏକଥା ମୋର ମନେ ରହିବ । ସାଳିଆ ନଈର ଏଇ ଗଣ୍ଡ କୂଳରେ ମୁଁ ପାତାଳୀ ଲିଙ୍ଗ ହେଇ ରହିବି । ମୋର ନାଁ ହେବ ଗଣ୍ଡେଶ୍ୱର । ମୋର ଜୟନ୍ତୀ ଶିବରାତ୍ରି ଦିନ ଯେ ମୋତେ କେତକୀ ଫୁଲ ଦେଇ ପୂଜା କରିବ ଏଇ ପୀଠରେ ସେ ଭୋଗ ପାଇବ, ଯୋଗ ବି ପାଇବ । ଆଉ କାର୍ତ୍ତିକ ପୂର୍ଣ୍ଣମୀ ଦିନ ଯେ ଏଠି ସ୍ନାନ କରିବ, ସେ ହେବ ସର୍ବସୁଖରେ ସୁଖୀ । ଅନ୍ତରେ ମୁକ୍ତି ।

ହର ପାର୍ବତୀ ଉଡ଼ିଗଲେ । କେଶରୀ ରାଜାଙ୍କୁ ସ୍ୱପ୍ନାଦେଶ ହେଲା । ସେ ମନ୍ଦିର ତୋଳିଲେ ଉତ୍ତରବାହିନୀ ସାଳିଆର ସେଇ ଗଣ୍ଡକୂଳରେ । ଜଙ୍ଗଲ କଟା ହେଇ ବସ୍ତି

ହେଲା । ଗଣ୍ଡେଶ୍ୱରପୁର ନାଁରେ ବ୍ରାହ୍ମଣ ଶାସନ ସାଙ୍ଗକୁ ସବୁ ଜାତିର ଲୋକଙ୍କ ଆଡ଼ତ ଜମିଲା । ଗଣ୍ଡ କୂଳର ଜଙ୍ଗଲରେ କିନ୍ତୁ ରହିଲା କେତକୀ ଫୁଲର ମସ୍ତ ଝାଟି । ଆମ୍ବ, ପଣସ ଆଉ ସପୁରି ସାଙ୍ଗକୁ କେତକୀ ଝାଟି ବେଶ୍ ମାନିଲା । ଜାଗର ବେଳକୁ ଆମ୍ବ ବଉଳ ଆଉ ପଣସ ଫୁଲର ବାସ୍ନା ସାଙ୍ଗକୁ କେତକୀ ଫୁଲର ମହକରେ ଶିବରାତ୍ରିର ଜାଗର ଦୀପ ଯେତେବେଳେ ଜଳିଉଠେ, ଲାଗେ ଗଣ୍ଡେଶ୍ୱରପୁର ଗାଁରେ ଯିମିତି ଅପ୍‌ସରା ମାନେ ଧୂପ-ଦୀପର ପେଡ଼ି ପସରା ସବୁ ଖୋଲି ଦେଇଛନ୍ତି ।

କେତେ ଯୁଗ ବିତିଗଲାଣି । ଗଣ୍ଡେଶ୍ୱର ମହାଦେବଙ୍କ ସାଙ୍ଗକୁ ଗଣ୍ଡେଶ୍ୱରପୁର ଶାସନ ଆଉ ଗାଁର ମଧ୍ୟ ବଡ଼ ନାଁ ଡାକ ବାରକୋଶକୁ । ରାସପୂନେଇଁ ଦିନ ଭାରି ଭିଡ଼ । ତିଳଟାଏ ପକେଇବା ପାଇଁ ଜାଗା ନ ଥାଏ ରାତି ଚାରିଟା ବେଳକୁ । ମାଛିଅନ୍ଧାର ବେଳକୁ ଖାଲି ପଡ଼ିଯାଏ ଘାଟଟା । ଗଣ୍ଡଟାକୁ ଶହେ ଗଜ ଛାଡ଼ି ସାଳିଆ ନଈର ଧାର ଶୁଖିଯାଇଥାଏ । ଲୋକେ ସେଇ ପାଖ ଦେଇ ବାଉଁଶ ପୋଲରେ ଚାଲିଯାନ୍ତି ଆର ପାରି ଯାତ୍ରା ପଡ଼ିଆକୁ । ସେଦିନ ମାଛିଅନ୍ଧାର ବେଳକୁ ମାଝିସାହିଆ ଟୋକା କେଇଟା ଗଣ୍ଡରେ ପହଁରୁ ପହଁରୁ ଦେଖିଲେ କ'ଣ ଗୋଟାଏ ଭାସୁଛି । ଧରି ପକେଇବା ବେଳକୁ ସ୍ତ୍ରୀଲୋକଟାଏ । କୂଳକୁ ଟାଣି ଆଣି ଚିହ୍ନନ୍ତି ତ ନୀଳନାନୀ । ଖାଲି ମାଝି ସାହି କାହିଁକି ସାରା ଗାଁଟାର ଅତି ଆଦରର ନୀଳନାନୀ । ସାଙ୍ଗେ ସାଙ୍ଗେ ହୁରି ପଡ଼ିଗଲା ନୀଳନାନୀ ଆଜି ସଯୁଆଁ ସ୍ୱର୍ଗକୁ ଚାଲିଗଲା । ଆଜି ପରା ଏ ଦିନରେ ଗଣ୍ଡେଶ୍ୱର ମହାଦେବଙ୍କ ଘାଟରେ ତା' ଛଡ଼ା ଆଉ କା'ର ଜୀବନ ଯାଇପାରେ ? ହର ପାର୍ବତୀଙ୍କ ସାଙ୍ଗରେ ସେ ନିଶ୍ଚୟ ଏକାକାର ହେଇ କୈଳାସକୁ ଚାଲିଗଲା । ଯିମିତି କର୍ମ ସେ କରିଥିଲା ତା'ର ଫଳ ସେ ହାତକୁ ହାତ ପାଇଗଲା । ଧନ୍ୟ ଧନ୍ୟ ନୀଳନାନୀ ! ବୁଢ଼ା ବୁଢ଼ୀଏ କହିଲେ- ଧନ୍ୟ ଲୋ ନୀଳ, କି ଭାଗ୍ୟ କରି ତୋ ମା ତତେ ଜନ୍ମ କରିଥିଲା ? ମାଝି କୁଳରେ ସ୍ତ୍ରୀ ଜନମ ପାଇଲେ କ'ଣ ହେବ, କେତେ ଜନ୍ମର କି ତପସ୍ୟା କରିଥିଲୁ ଲୋ, ଆଜି ପରା ଦିନରେ ସଯୁଆଁ ସର୍ଗକୁ ଚାଲିଗଲୁ । ସବୁଆଡ଼େ ନୀଳନାନୀର ଜୟ ଜୟକାର । ଟୋକାଏ କାନ୍ଧେଇ ନେଇ ଚାଲିଗଲେ ନୀଳନାନୀର ମଲା ଦେହଟାକୁ ମାଝି ସାହି ମଝିର ତା'ର ସେଇ ବାରି ହେଇଯାଉଥିବା ଚାଳ ଘରଟିକୁ । ସେ ସନ କାର୍ତ୍ତିକ ପୂନେଇଁ ବେଳକୁ ମଗୁଶୀର ସଂକ୍ରାନ୍ତି ଯାଇ ଦି ପାଳି ମାଣବସା ସରିଥାଏ । ନୀଳନାନୀର ଦାଣ୍ଡପଟ ବାରଣ୍ଡା ଆଉ କାନ୍ଥ ଲିପାପୋଛା ହେଇ ଚହଟ ଚିକଣ ଦିଶୁଥାଏ । କାନ୍ଥରେ କଉଡ଼ି ବଦାଡ଼ିଆ ଝୋଟି ଉପରେ ପଦ୍ମଫୁଲର ପାଖୁଡ଼ା ସବୁ ଅଙ୍କା ଯାଇଥାଏ । ଦାଣ୍ଡ ଆଗରେ ବାଁ ପଟକୁ ନୀଳନାନୀର ଛୋଟ ଦୋକାନଘରଟି ଆଉ ଡାହାଣ ପଟକୁ ସିମେଣ୍ଟରେ ତିଆରି ହେଇଥିବା ତୁଳସୀ ଚଉରା ଚାରିପଟେ ପକ୍କା ଚାନ୍ଦିନୀ । ଅନ୍ୟ ଘରମାନଙ୍କ ବାରଣ୍ଡାରେ ଶୁଖୁଥାଏ ଛିଡ଼ା ଦରଛିଡ଼ା ଘୁମୁରି ଜାଲ । ଆଉ ତା ଭିତରୁ ବାହାରି ଆସୁଥାଏ ବିରିକାଳିଆ ଆଇଁଷିଆ ଗନ୍ଧ । ହେଲେ ନୀଳନାନୀ ଘର ଭିତରେ

କାଲି ସଂଜରୁ ଦିଆଯାଇଥିବା ଝୁଣାବାସ୍ନାର ମହକ ତଥାପି ଭୃରୁ ଭୂରୁ ହେଇ ବିଛୁଡ଼ି ପଡୁଥାଏ । ନୀଳନାନୀର ଘର ଆଗରେ ଆଉ ଗୋଟାଏ ବାଳିଯାତ୍ରା । କଥା ହେଲା, ଗାଁର ସବୁଜାତିର ପିଲାମାନେ ନୀଳନାନୀର ଶବ ସଂସ୍କାର କରିବେ । ନିଆଁ ଦବ ତା ପୁତୁରା ଯାହାକୁ ନୀଳନାନୀ ପୁଅ କରି ରଖିଥିଲା । ତା' ବାଡ଼ିର ନିମଗଛ କାଟିବାକୁ ମାଝି ସାହି ଟୋକାଏ ଭିଡ଼ିଗଲେ । ମାହାନ୍ତି ସାହି, ବ୍ରାହ୍ମଣ ଶାସନ, କୁମ୍ଭାର ସାହି ପିଲାଏ ଆଗଭର ହେଇ ଆସିଗଲେ କୋକେଇ ବାନ୍ଧିବା ପାଇଁ । ପଛକୁ ପଛ କମାର, ତେଲୀ, ଗୁଡ଼ିଆ ଆଉ ବଢ଼େଇ ସାହିଆ ସବୁ ଆସି ଜମା ହେଇଗଲେ । ପବିତ୍ର ପଞ୍ଚକ ପୂନେଇଁ ଦିନ ସ୍ୱର୍ଗକୁ ଯାଇଥିବା ନୀଳନାନୀର ଶବଟା ଯେମିତି ଦି'ପହର ହବା ଆଗରୁ ସଂସ୍କାର ସରିଯିବ । ଶାସନର ବିଧାନ ଦିଅନ୍ତି ନରି ମିଶ୍ରେ । ଜାତି ଭେଦକୁ ଭାରି ମାନନ୍ତି । କଥା କଥାକେ ମନୁ ପରାଶରଙ୍କର ସ୍ମୃତି ସବୁରୁ ନଜିର ଦିଅନ୍ତି । ଶେଷରେ ସିଏ ବି ଆସିଲେ ନୀଳନାନୀର ଶବ ଦେଖିବା ପାଇଁ । କହିଲେ, ନୀଳ କଥା ଅଲଗା । ତାକୁ କାନ୍ଧେଇ ନବାରେ କି ତା'ର ସଂସ୍କାର କରିବାରେ କିଛି ଜାତି ବିଚାର ନାହିଁ । ସେ ପୁଣ୍ୟାତ୍ମା ଶବରୀର ଅବତାର । ରାମ ତ ପୁଣି ଶବରୀର ଅଇଁଠା ଖାଇଥିଲେ । ନୀଳ ତା'ର ତପସ୍ୟା ଦ୍ୱାରା ସ୍ୱର୍ଗକୁ ଯାଇଛି ।

ଦିନ ଆଠଟା ବେଳକୁ ସବୁ ସଜିଲ ହେଇଗଲା । ନୀଳନାନୀକୁ ଶେଷ ଯାତ୍ରା ପାଇଁ ସଜେଇବା ବେଳେ ନରି ମିଶ୍ରେଙ୍କ ନାତି ଗଣଶା ଯେତେବେଳେ ନୂଆ ଧୋତିଟାଏ ତା'ଦିହରେ ବେଢ଼େଇବାକୁ ଗଲା, ସେତେବେଳେ ଆବିଷ୍କାର କଲା ତା'ର କାନିରେ ପଡ଼ିଥିବା ତିନିଟା ଗଣ୍ଠି । କହିଲା, ହେଇତ, ନୀଳନାନୀର କାନିରେ ତିନିଟା ଗଣ୍ଠି ସେଇ ରକମ ପଡ଼ିଛି । ତା' ନୂଆ ଲୁଗାରେ ବି ସେଇ ତିନିଟା ଗଣ୍ଠି ପକେଇବାକୁ ହେବ । ନ ହେଲେ ତା'ଆତ୍ମା ଶାନ୍ତି ପାଇବ ନାହିଁ । ସେଇଆ ହେଲା । ତା' କୋକେଇ ଉଠିବା ବେଳକୁ ଗାଁରେ ଥାଟପଟାଳି ଭାଙ୍ଗୁଛି । ଯିଏ ପାରିଲା ସିଏ ଆଣି ଫୁଲଟିଏ କି ଫୁଲ ଗୋଛାଟାଏ ପକେଇ ଦେଲା । ମଶାଣିରେ ପହଞ୍ଚିବା ବେଳକୁ ନୀଳନାନୀର ଦେହଟା ଫୁଲରେ ପୋତି ହେଇ ପଡ଼ିଥାଏ । ସବୁ କାମ ସୁରୁଖୁରୁରେ ସରିଗଲା । କିନ୍ତୁ କଥାଟା ଆରମ୍ଭ ହେଲା ତା ପରଦିନ- ମଶାଣିର ନିଆଁ ଶିତଳା ସରିବା ପରେ । ନୀଳନାନୀ ମଲା କେମିତି ? ସେ ତ କେବେ ବି ଆତ୍ମହତ୍ୟା କରି ନ ଥିବ । କରିଥିଲେ ତ କରିଥାନ୍ତା ଦାରୋଗା ଭାଇ ମରିବା ଦିନ । ଆତ୍ମହତ୍ୟା ତ କରି ନ ଥାନ୍ତା ସେ ସତୀ ହେବ ବୋଲି ଜିଦ୍ ଧରିଥିଲା । କିନ୍ତୁ ହଠାତ୍ ସେ ଜିଦ୍ ସେ ଭାଙ୍ଗି ଦେଇଥିଲା ଆଉ ଗୋଟାଏ ଝୁଙ୍କରେ, ଆଉ ଗୋଟାଏ ଜିଦ୍ ଧରି । ସେଇଦିନ ସେ ତା କାନିରେ ତିନିଟା ଗଣ୍ଠି ପକେଇଥିଲା ସାଳିଆ ନଈର ସୁନା ଇଲିଶିକୁ ସେ ଧରିବ, ଧରିବ, ଧରିବ । ଦାରୋଗା ଭାଇର ଅପୂରଣ ଥିବା ଇଚ୍ଛାକୁ ସେ ଯେମିତି ହଉ ପୂରଣ କରିବ । ନ ହେଲେ ଦାରୋଗା ଭାଇର ଆତ୍ମା ସ୍ୱର୍ଗରେ ଶାନ୍ତି ପାଇବ ନାହିଁ । ବ୍ରାହ୍ମଣ ଶାସନର ବିଧବାକୁ ଛାଡ଼ିଦେଲେ ଆଉ ସବୁ ସାହିର ବିଧବାମାନେ

ଆଇଁଷ ଖାଆନ୍ତି । କିନ୍ତୁ ନୀଳନାନୀ ବିଧବା ହେବା ଦିନଠୁଁ ଆଇଁଷ ଛାଡ଼ିଦେଲା । ତିଳକ ଲଗେଇଲା । ହବିଷାନ୍ନ କଲା । ରୋଜ୍ ଥରଟିଏ ଭାତ ଖାଏ । ରାତିକୁ କଉଁଦିନ ରୋଟି ଚାରିପଟ ତ କଉଁଦିନ ମୁଢ଼ି କି ଚୁଡ଼ା ଗଣ୍ଡିଏ । ଗୋଟାଏ ଦୃଢ଼ ପ୍ରତିଜ୍ଞାରେ ତା'ର ଆଖି ଦି'ଟା ସେଇଦିନଠୁଁ ହେଇଗଲା ପଥର ଭଳି ସ୍ଥିର ।

ଦାରୋଗାଭାଇ ସାଙ୍ଗରେ ବାହାଘର ହେବା ବେଳକୁ ନୀଳନାନୀର ବୟସ ହେଇଥାଏ ଷୋହଳ । ସେତେବେଳକୁ କଣ୍ଢେଇ ଖେଳର ନିଶା ତା ମନରୁ ଯାଇ ନ ଥାଏ । ବାପ ମରିଥାଏ ପିଲାଦିନରୁ । ମା ଦୁଆରୀମାଉସୀର ଶୁଖୁଆ ବେଉସା ଥିଲା ବେଶ୍ ସରଗରମ । ମାଝି ସାହିର ଶୁଖୁଆ ବିକାଳିମାନଙ୍କର ସିଏ ଥିଲା ଲିଡର । ଗଣ୍ଡେଶ୍ୱରପୁର ଗାଁକୁ ଲାଗି ଭଦ୍ରକ ଟାଉନ୍ । ତଳମାଳିଆ ଗୋଖା କେଉଟଙ୍କର ଶୁଖୁଆ ଆଡ଼ତ ଟାଉନର ପଶ୍ଚିମରେ ରାଳିଆ ପଞ୍ଚାୟତର ରେଳଲାଇନ୍‌କୁ ଲାଗି ଯଉଁଠି ୯ବେ ହେଇଛି ଫେରୋକ୍ରମ କାରଖାନା । ସେଇ ଶୁଖୁଆ ଗୋଦାମର ମାଲିକାନା ଅଂଶ ଥାଏ ପୁରୁଣା ବଜାରର ନାମଡାକ ହୁସେନ୍‌ଭାଇର । ଗଣ୍ଡେଶ୍ୱରପୁର ମାଝି ସାହିର ସ୍ତ୍ରୀଲୋକମାନେ ହୁସେନ୍‌ଭାଇ ପାଖରୁ ସଉଦା କରି ବେପାର କରନ୍ତି ମଫସଲରେ- ଗଉଡ଼ ପାଟଣା, ବିଶିନିପୁର, ଷଣ୍ଢସାହି, ଚିଙ୍ଗୁଡ଼ିବିନ୍ଧା ଏଇମିତି ଆଖପାଖର ପାଞ୍ଚ କୋଶ ଭିତରେ । ମାଛିଅନ୍ଧାରରୁ ଯାଇ ଫେରନ୍ତି ମୁହଁସଂଜରେ । ଦୁଆରିମାଉସୀର ବେଉସା ବେଶ୍ ଜମେ । ସେ କହେ କେବଳ ତା ପାଖରେ ଥାଏ ଧାମରେଇ ମୁହାଣର ଅସଲି ଇଲିଶି ଶୁଖୁଆ । ଲୁଣରେ ଜରା ହେଇ ସୁନାର ଲହୁଣି ଭଳି ତା ଇଲିଶି ଶୁଖୁଆରୁ ଖଣ୍ଡିଏ ଯିଏ ଚାଖିଛି ମଣିଷ ଜୀବନର ଅସଲି ସରାଗ ସିଏ ପାଇଛି । ତା' ଇଲିଶି ପାଇଁ ଖାଲି ଦରକାର ସୋରିଷ ବାଟଣ ଟିକିଏ । କରେଇରେ ଲେଉଟି ଦେଇ କଞ୍ଚାଲଙ୍କା ଆଉ ସୋରିଷ ବାଟଣ ଟିକିଏ ଜାରିଦେବ । ନ ହେଲେ କଦଳୀ ପତ୍ରରେ ଗୁଡ଼େଇ ଦେଇ ରନ୍ଧାରନ୍ଧି ପରେ ଚୁଲିରେ ଘଷିନିଆଁରେ ଦଣ୍ଡେ ପକେଇଦବ । ବାସ୍, ଆଉ କିଛି ଦରକାର ନାହିଁ । ଭାତ ଯାଇ ତଳି ପେଟରେ । ସାତ ଦିନର ମଳୁ ପାଇଁ ଅରୁଚି ଛଡ଼େଇ ଦବ ତା'ର ଇଲିଶି ବେସର କି ପତରପୋଡ଼ା । ଖାଲି ଭୂଇଁ ପୋଡ଼ା ଶୁଖୁଆ ଖଣ୍ଡକର ମଜା ବି ମିଳିବ ନାହିଁ ରୋହି-ଭାକୁଡ଼ କାଲିଆରୁ । ସତକଥା, ତା' ବିକାଳି ପଣିଆରୁ ହଉ କି ତା' ଶୁଖୁଆର ମହତ୍ତ୍ୱ ପାଇଁ ହଉ ଦୁଆରୀମାଉସୀର ଭାରି ନାମ ମଫସଲରେ । ଅସଲି କାଁ ପଡ଼ିଆ ଶିଳା ଶୁଖୁଆ ନବ ତ ଦୁଆରୀ ପାଖରୁ । ଧାମରେଇ ଇଲିଶି କି ପିତିରି ଶୁଖୁଆ ନବ ତ ଦୁଆରୀ ପାଖରୁ । ମାଝି ସାହିର ଆଉ ସବୁ ମାଇପି ବେପାରୀମାନେ କହନ୍ତି, ଦୁଆରୀର ଗୋଟାଏ କାଳେ ସିଦ୍ଧି ରହିଛି । ମା' ମଙ୍ଗଳାଙ୍କ ପାଖରୁ ସେ କିଛି ଗୋଟାଏ ବର ପାଇଛି ଯେ, ମଫସଲର ସବୁ ଝିଅବୋହୂଙ୍କୁ ସେ କିମିଆଁ କରିଦେଇଛି । ନ ହେଲେ ସେଇ ଏକା ଜିନିଷ ଭିତରେ ଏମିତି କ'ଣ ତଫାତ୍ ଅଛି ଯେ ସଭିଏଁ ଖାଲି ଦୁଆରୀ ଦୁଆରୀ ଭଜି ହୁଅନ୍ତି । ହେଇଥିବ । ଦୁଆରୀମାଉସୀର

ବେପାରରୁ କିଛି ଚାଷଜମି କିଣା ହେଇଛି । ବରଷକ ଭାତ ଚଳେ । କିଛି ସାମାନ୍ୟ ଧରଣର ମହାଜନି କାରବାର ବି ତା'ର ଥାଏ । ମଫସଲରେ ଶୁଖୁଆ ବିକା ତା'ର କୁଳବେଉସା । କାଁ ପଡ଼ାରୁ ସେ ଗଣ୍ଡେଶ୍ୱରପୁରକୁ ବୋହୂ ହେଇ ଆସିବାବେଳକୁ ତା ଶାଶୂର ବେଉସା ଥାଏ ମଫସଲରେ । ନୀଳନାନୀ ପେଟରାଣ୍ଡିଆ । ଜନମରୁ ବାପ ମୁହଁ ଚାହିଁ ନାହିଁ । ସିଏ ବରଷକର ହେଇଥାଏ ତା ମା ତାକୁ ଗୋସିମା ପାଖରେ ଛାଡ଼ି ଦେଇ ବେଉସା ଧରିଛି । ନୀଳନାନୀ ଭାରି ଗେଲବସରରେ ବଢ଼ିଛି ତା ଗୋସିମା କୋଳରେ । ନାତୁଣୀ ସେଇ, ନାତି ବି ସେଇ । ନୀଳନାନୀ ସ୍କୁଲ ମାଟି ମାଡ଼ି ନାହିଁ । ଏଇମିତି ବର୍ଣ୍ଣବୋଧରୁ ଦରଖଣ୍ଡିଆ ପଢ଼ି ବଡ଼ ଜୋର୍‌ରେ ନୀଳ ବୋଲି ଦିଟା ଅକ୍ଷର ଶିଖିଥିଲା । ତା'ପରେ ଆଉ ଟିକିଏ ଚେଷ୍ଟା କରି 'ଦେଈ' ବୋଲି ଦି' ଅକ୍ଷର ଶିଖି ନେଇଥିଲା । କିନ୍ତୁ ସବୁଠୁଁ ବଡ଼ କଥା ହେଲା, ମାଝି ସାହିର କେହି ପିଲା ତା'ର ଖେଳ ସାଙ୍ଗ ନ ଥିଲେ । ବ୍ରାହ୍ମଣ ଶାସନ ଆଉ ମାହାନ୍ତି ସାହିର ପୁଅ ଝିଅ ସବୁ ତା'ର ଭାରି ସାଙ୍ଗ । ସାଙ୍ଗତ ନୁହନ୍ତି, ଭକ୍ତ ବୋଲି କହିବା କଥା । ଦୁଆରୀମାଉସୀର କିମିଆଁରୁ ନୀଳନାନୀ ବୋଧହୁଏ କିଛି କିମିଆଁ ଝିଅ ହିସାବରେ ପେଟରେ ଥିବା ବେଳୁ ଅସୁଲ କରି ନେଇଛି । ରୋଜ ସଂଜରେ ପଂଝେ ଛୁଆ ଆସି ତା' ଦାଣ୍ଡରେ ହାଜର । ନୀଳନାନୀ କଣ୍ଢେଇ ବାହାଘର କେବେ ହବ ? ନୀଳନାନୀ କହିବ, ରୁହ, ବାହା ନଗ ଆସୁ । ଜମିଯାଏ ପୁଷ ପୂନେଇଁ ରାତିଠାରୁ ଚନ୍ଦନ ପୂନେଇ ରାତି ପର୍ଯ୍ୟନ୍ତ । ଧାନକଟା ସ୍କୁଲ ଛୁଟି ଭିତରେ ପଡ଼େ ପୁଷ ପୂନେଇଁ । ସେତେବେଳକୁ ଖଳାରେ ଧାନ ସବୁ ଜମା ହୋଇଥାଏ । ରାତାରାତି ବଦାଡ଼ି ଦିଆଯାଏ । ଧାନଗଦାର ଉଷୁମ ଭିତରେ ପୁଷ ପୂନେଇଁ ରାତିର ଲୁଚକାଳି ଖେଳ ସାଙ୍ଗକୁ ଆରମ୍ଭ ହୋଇଯାଏ କଣ୍ଢେଇ ବାହାଘରର ଆୟୋଜନ । ମାସକ ପର୍ଯ୍ୟନ୍ତ ଚାଲେ ସଜଡ଼ା ସଜଡ଼ି । ନୀଳନାନୀର ଝିଅ ପାଇଁ ବର ଖୋଜା । ତା ଝିଅ ପାଇଁ କେବେ ମାଝି ଘରେ ପ୍ରସ୍ତାବ ପଡ଼େ ନାହିଁ । ବ୍ରାହ୍ମଣ ଘରେ, ନ ହେଲେ ମହାନ୍ତି ଘରେ । ସବୁ ବର୍ଷ ମାଘଠାରୁ ବୈଶାଖ ପର୍ଯ୍ୟନ୍ତ ଶୁକ୍ଳ ଦ୍ୱାଦଶୀ ତିଥିରେ ବାହାଘର ହୁଏ । ଚୈତ୍ର ମାସଟା ବନ୍ଦ । ଚୈତ୍ର ମାସରେ ମାଝି ସାହିଆଙ୍କର ଚଇତି ପରବ । ପୂନେଇଁକୁ ଡଙ୍ଗା ପୂଜା, ଘୋଡ଼ା ନାଚ, ବେଶ୍ ଗରମାଗରମ । ମକର ସଂକ୍ରାନ୍ତି ଯାତ୍ରାରୁ ପାଲିଙ୍କି ସବାରି କିଣା ହୁଏ । ନୀଳନାନୀ ତା ଝିଅ କିଣେ ସେଇ ଯାତ୍ରାରୁ । ଆହାରପଦା ବଙ୍ଗାଳୀ କାରିଗରମାନେ ସୁନ୍ଦରିଆ କଣ୍ଢେଇ ସବୁ ବିକନ୍ତି । ସେଇଥିରୁ ପସନ୍ଦ କରି ସବୁ ବର୍ଷ ନୀଳନାନୀ ତା ଝିଅମାନଙ୍କୁ କିଣେ । ବର୍ଷକୁ ତିନିଟା ବାହାଘର । ଏଣୁ ବର୍ଷକେ ତିନିଟା ଝିଅ କିଣି ସେ ସବୁ ତାଙ୍କୁ ତାଲିମ୍ ଦିଏ କିମିତି କିଏ ବୋହୂପଣିଆ କରିବ । କିମିତି ସକାଳୁ ଉଠିବ । ଶାଶୂ ଶଶୁରଙ୍କ ପାଦୁକା ପାଇବ । ଘର ଖରକି ଲିପାପୋଛା କରିବ । ଦିନବେଳା କେତେ ଓଢ଼ଣା ଦବ । ବର ସାମ୍ନା ସାମ୍ନି ହେଇଗଲେ କିମିତି ଆଡ଼ ଆଖିରେ ଚାହିଁବ । କଥା ନ କହି କିମିତି ପିଉଳ

ଖଡ଼ୁ ରୁପା ଚୁଡ଼ିରେ ଝମ୍ ଝମ୍ କରିବ । ଚାଲିବ ଯେ ଭୂଇଁରେ କେମିତି ପାଦ ଶବ୍ଦ ଶୁଭିବ ନାହିଁ । ରାତିରେ ସମସ୍ତଙ୍କ ଗୋଡ଼ ମୋଡ଼ି ସାରି ଶୋଇବାକୁ ଯିବ ଯେ ସେତେବେଳକୁ ବର ଯଦି ଶୋଇ ସାରିଥିବ, ତା ନିଦ ଭାଙ୍ଗିବ ନାହିଁ । ପିଲାଏ ପଚାରନ୍ତି, ନୀଳନାନୀ, ଯଦି ବର ଶୋଇ ନ ଥିବ ତୋ ଝିଅ କ'ଣ କରିବ ? ନୀଳନାନୀ କିଛି କହେ ନାହିଁ । ଖାଲି ମୁରୁକି ହସିଦିଏ । ଥରେ ନାଲୁ ତିଆଡ଼ିଙ୍କ ପୁଅ ସନା ଜିଦ୍ ଧରିଲା, ନୀଳନାନୀ, ତୁ ଆମକୁ ଠକଉଛୁ । କହ ତୋ ଜୋଇଁ ଯଦି ଶୋଇ ନ ଥିବ ତା'ହେଲେ ତୋ ଝିଅ କଣ କରିବ ? ଏତିକିରେ ନୀଳନାନୀ ଭାରି ରାଗିଗଲା । ଆବେ ଛତରା, ବଜାରୀ, ବଦମାସି କରିବୁ ଯଦି ତୋତେ ଖେଳରୁ ବାହାର କରିଦେବି । ତୁ କାଲିଠୁଁ ଆଉ ଆସିବୁ ନାହିଁ । ଏତିକିରେ ସନାର ଜିଦ୍ ଶେଷ । କାନ ମୋଡ଼ି ହୋଇ କହିଲା, ''ନାଇଁଲୋ ନୀଳନାନୀ, ମୁଁ ଆଉ ବଦମାସି କରିବି ନାହିଁ । ତୁ ମୋତେ ଖେଳରୁ ବାହାର କରିଦେ'ନା ।'' ନୀଳନାନୀ ତା ପରେ ସନାକୁ କୁଣ୍ଢେଇ ପକେଇ ଗେଲ କରେ- ମୋ ସୁନାଭାଇଟା, ତୋତେ ବାହାର କରିଦେଲେ ମୋ ଝିଅର ସବାରି ସାଙ୍ଗରେ କିଏ ଯିବରେ ? ଅଥଚ ସେ କଥାଟା ପଚାରିବାରେ ବଦମାସିଟା କେଉଁଠି ରହିଲା, ସେ କଥା କେହି କେବେ ବୁଝିପାରେ ନାହିଁ କି ନୀଳନାନୀକୁ ପଚାରିବାର ସାହସ ମଧ୍ୟ କରେ ନାହିଁ । ନୀଳନାନୀ ରାଗିଲା ମାନେ ସବୁ ଚୁପ୍‌ଚାପ । ତା ଉପରେ ଆଉ ପ୍ରଶ୍ନ ନାହିଁ ।

ପୂନେଇଁକୁ ତିନି ଦିନ ବାକି । ସେଦିନ ନୀଳନାନୀର ଝିଅ ବାହାଘର । ଜହ୍ନ ଆଲୁଅରେ ରାତିଟା ଭରିଯାଇଥିବ । ସକାଳୁ ଘର ଲିପାପୋଛା ସରିଥିବ । କାନ୍ଥରେ ଝୋଟି ଦିଆ ସରିଥିବ । ଝିଅ ମଙ୍ଗୁଳା ସରିଥିବ ସକାଳୁ । ସ୍କୁଲରୁ ଫେରି ପିଲାଏ ଆତ ଡାଳରେ ପାନ ଝାଡ଼ ତିଆରି କରିସାରିଥିବେ । ସବୁ ଠିକ୍ ଠାକ୍ । ସଂଜ ପରେ ପରେ ବ୍ରାହ୍ମଣ ସାହିରୁ ବର ବାହାରିବ । ପାଲିଙ୍କି ଚାଲେ ରେ ହୁକୁମ୍ ଭାଇ, ହାଉଲେ ଚାଲରେ ହୁକୁମ୍ ଭାଇ, ସମ୍ଭାଳି ଚାଲରେ ହୁକୁମ୍ ଭାଇ, ବାଟ ବହୁତରେ ହୁକୁମ୍ ଭାଇ, ପାଟ ଗୋହିରା ରେ ହୁକୁମ୍ ଭାଇ... । ଏମିତି ଡାକ ଦେଇ ଶହେ ଗଜ ରାସ୍ତାକୁ ଘଣ୍ଟାକରେ ଆସିବେ ବରଯାତ୍ରୀ । ନୀଳନାନୀ ଦୁଆରେ ବାଟମଙ୍ଗଳା ହେଇ ବର ଓହ୍ଲେଇବ ପାଲିଙ୍କିରୁ । ଝିଅର ବାପ ନାହିଁ, ମା ସବୁ କରିବ । ବାହାଘର, ଯୌତୁକ ଦିଆ ସରି ଝିଅ ବିଦା ବେଳର କାନ୍ଦଣା ବୋଲିବାବେଳେ ନୀଳନାନୀ ସତକୁ ସତ କାନ୍ଦି ପକାଏ । ପିଲାଏ ବୋଧ ଦେଇ କହନ୍ତି, ନୀଳନାନୀ, କାନ୍ଦନା- କାନ୍ଦନା । ଫେର୍ ଆର ମାସରେ ତ ଆଉ ଗୋଟାଏ ଝିଅ ବାହାଘର କରିବା । ନୀଳନାନୀ ଆଖି ପୋଛି ଖାଲି ଧକେଇବ । ତା' କାନ୍ଦଣାରେ ବେଳେବେଳେ ଅନ୍ୟ ପିଲା ମଧ୍ୟ କାନ୍ଦି ପକାନ୍ତି । ଝିଅମାନଙ୍କର ନାଁ ଧରି ନୀଳନାନୀ ବାହୁନେ- ମୋ ଦୁଃଖୀ ସଙ୍ଖାଳିରେ ଟୁନି, ମୋ ରଙ୍କରତନରେ ଟୁନି, ମୋ ଶୋକପାସୋରାରେ ଟୁନି... ଜୋଇଁଙ୍କୁ ସଅଁପି ଦେଇ କହିବ-

ମୋ ରଙ୍କୁଣୀ ଚାନ୍ଦ ହେ ଧନ, ମୋ ଟୁନି ଲାଗିଲା ହେ ଧନ । କିଛି ଜାଣିନି ହେ ଧନ, ଦଶ ଦୋଷ ତା'ର କ୍ଷମା କରିବ ହେ ଧନ... । ତା'ପରେ ବରବାହୁଡ଼ା ଗୀତ- ସବାରି ଚାଲେରେ ଧୀରେ, ଧୀରେ ଧୀରେ, ବାଇଦ ବାଜେରେ ନାରେ, ନାରେ, ନାରେ...

ଏଇ ଖେଳ ଭିତରେ ନୀଳନାନୀର କୈଶୋର ଚାଲିଯାଇ କେତେବେଳେ ଆସିଯାଇଥିଲା ଯୌବନ । ପିଲାମାନେ କେହି କିଛି ବୁଝିବା ଆଗରୁ ପ୍ରଚାରିତ ହେଇଗଲା ନୀଳନାନୀର ବାହାଘର । ହେଲେ ତା ସବାରି କିନ୍ତୁ ଉଠିବ ନାହିଁ ଆଉ ଗାଁକୁ । ସେ ଘରଜୋଇଁଆ ରହିବ । ଦୁଆରୀମାଉସୀ ଖୋଜି ଖୋଜି ଧାମରେଇରୁ ବର ଯୋଗାଡ଼ କରିଛି । ବାଇଶ ବର୍ଷର ଯୁଆନ ଭେଣ୍ଡା । ଚାଷବାସ, ମାଛଧରାରେ ପୋଖତ । ପିଲାବେଳୁ ସମୁଦ୍ରକୂଳିଆ ଭୂଇଁରେ ଚାଷ କାମ ଶିଖିଛି । ମୁଣ୍ଡଳି, ଘୁମୁରି ଜାଲ ପକେଇ ଜାଣିଛି । ଜାଆଁଳ ଚିହ୍ନି ଜାଣିଛି, ଧରି ଜାଣିଛି, ଜିଏଁଇ ଜାଣିଛି, ନିଶା ପାଣି ଛୁଏଁ ନାହିଁ । ଚଇତ ଯାତର ନାଚ ଗୀତ ବି ଜାଣିଛି । ସତକୁ ସତ ଗଣ୍ଡେଶ୍ୱରପୁରରେ ନୀଳନାନୀର ବର ଓରଫ ଦାରୋଗାଭାଇ ଯେତେବେଳେ ଆସି ପହିଲୁ ପହଁଚେ, ଗାଁ ପିଲାଏ ଭାରି ଖୁସି । ବଡ଼ କଥା, ନୀଳନାନୀ ସବୁଦିନେ ଗାଁରେ ରହିବ ନୀଳନାନୀ ହେଇ । ନୀଳନାନୀ ବାହାଘର ଭୋଜି ଭାତ ବ୍ରାହ୍ମଣ ଆଉ ମାହାନ୍ତି ସାହି ପିଲାଏ ଖାଇଲେ ନାହିଁ ସିନା ହେଲେ ସାରା ରାତିଟା ଜଗି ରହି ବାହାଘର ଦେଖିଲେ । ଶହେଟା ଝିଅର ବାହାଘର କରିଥିବା ନୀଳନାନୀ ନିଜେ କେମିତି ବାହା ହଉଛି ସେଇଆ ଦେଖିବା ପାଇଁ । ମିଛିମିଛିକା ବାହାଘର ଆଉ ସତ ବାହାଘରର କିଛି ଫରକ ଅଛି କି ନାହିଁ ଜାଣିବା ପାଇଁ । ହାତଗଣ୍ଠି ପଡ଼ିବା ବେଳେ ପିଲାଏ ଦେଖିଲେ ଓଢ଼ଣାଟା ଟିକିଏ ଉଠେଇଦେଇ ନୀଳନାନୀ ସେମାନଙ୍କୁ ଚାହିଁ ମୁହଁଟା ତଳକୁ କରିଦେଲା । ପିଲାଏ ପଢ଼ିଲେ ତା ଆଖିର ଭାଷା । ବୁଝିଲେ କଣ୍ଢେଇ ବାହାଘର ମଜା ସେଇଠୁଁ ସରିଗଲା । ତା'ପରଠୁ ନୀଳନାନୀ ଗାଁରେ ରହିଲେ ବି ଠିକ୍ ଆଗଭଳି ରହିଲା ନାହିଁ । ଘରୁ ପଦାକୁ ବେଶି ବାହାରେ ନାହିଁ । ଘରେ ରହେ । ଚୁପି ଚୁପି କଥା କହେ । ସବୁ କଥାରେ ଦାରୋଗାଭାଇର ପ୍ରଶଂସା । ତୋ ଭାଇ ଏମିତି । ତୋ ଭାଇ ସେମିତି । ଭାର ବୋହିବେ ଯେ ଏକାବେଳକେ ଆଣିବେ ବାରଣ୍ଡା ଛଣ । କୋଡ଼ି ହାଣିବେ ଯେ ଫୁଟେ ଫୁଟେ ଗହୀର । ମାଛ ଧରିବେ ଯେ ମହଣ ମହଣ । ତା' ଶଶୁରଘରେ ଗୋଦାମ ଗୋଦାମ ଶୁଖୁଆ । ପୋଖରୀ ସବୁରେ ମହଣ ମହଣ ମାଛ । ଧାମରେଇ ମୁହାଣରେ ମାଛ ଧରିବେ ଯେ ରାତି ପାହିଯିବ । ଏକାବେଳକେ ଭାର ଉଠେଇବେ ଯେ ଦି' ହାତରେ ଦି' ମହଣ । ଅବଶ୍ୟ ଦାରୋଗାଭାଇର ବପୁ ଥିଲା । ଚଉଡ଼ା ଛାତିର ପେଶୀ ସବୁ ଫୁଲି ଉଠିଥାଏ । ଆଖି ଦି'ଟାରେ ଆତ୍ମବିଶ୍ୱାସ ନିଆଁଭଳି ରଡ଼ ରଡ଼ ଜଳୁଥାଏ । ପାଟିରେ ପାଟିଏ ହସ । ହାତୀ ହାନ୍ତ ଭଳି ଦୁଇପାଟି ଦାନ୍ତରେ ଅନ୍ତରଙ୍ଗ ଆହ୍ୱାନ ଏବଂ ହାତ ଦି'ଟାରେ ସାରା ଦୁନିଆଟାକୁ ବାନ୍ଧି ରଖିବାର ସ୍ପର୍ଦ୍ଧା । ମଗୁଶୀର ମାସ ରାତି

ପାହାନ୍ତାରୁ ସେ ଯେତେବେଳେ ଧାନ ଭାର ବୁହେ, ତାର ଚାଲିର ଭାରୀ ଶବ୍ଦରୁ ଏବଂ ଧାନ ବିଡ଼ାର ଗୁରୁଗମ୍ଭୀର ରୁଣୁଝୁଣୁରୁ ଘର ଭିତରୁ ଥାଇ ବି ଜାଣି ହୁଏ ଦାରୋଗାଭାଇର ଭାର ଯାଉଛି । ପୁଷମାସିଆ ଯେତେବେଳେ ସାଳିଆ ନଈରେ ମାଝିମାନେ କଣ୍ଟା ଉଠାନ୍ତି, ସେତେବେଳେ ଘୂରୁଣୀ ଜାଲ ବିଛାଇ ଦାରୋଗାଭାଇ ଆଉ ସବୁ ମାଝି ସାହିଆଙ୍କ ସାଙ୍ଗରେ ମାଛ ଧରିବା ବେଳେ ବାରି ହୋଇପଡ଼େ । ତା' ରଡ଼ିରେ ସାରା ଗାଁଟା ଚମକି ଯାଏ । ପିଲାଏ ଦଉଡ଼ି ଯାଆନ୍ତି । ହେଇ ଦାରୋଗାଭାଇ କଣ୍ଟା ଉଠଉଛି । ଚାଲ ମାଛ ମିଳିବ କାନିରେ କାନିଏ । ପିଲାଏ ଆସି କୂଳରେ ଠିଆ ହେଲେ ଦାରୋଗାଭାଇ ଖାଲି ଆଡ଼େଇ କି ଟିକିଏ ଚାହିଁଦିଏ । ଆଉ ତା'ପରେ ଅନ୍ୟ ଧରାଳିକୁ ଲୁଚାଇ କଣ୍ଟା ଛାଟିବା ବାହାନାରେ ଫୋପାଡ଼ି ଦିଏ ପୁଞ୍ଜା ପୁଞ୍ଜା ପୁଠା, ଜହ୍ଣ୍ଣ ଆଉ ସେରଣା । ପିଲାମାନେ କୋଟିନିଧି ପରି ଉଠାଇ ନିଅନ୍ତି ଦାରୋଗାଭାଇର ସେଇ ଅନୁଦାନକୁ । ସମସ୍ତଙ୍କର ସେଇ ଗୋଟାଏ କଥା- ଦାରୋଗାଭାଇ ନୀଳନାନୀର ଉପଯୁକ୍ତ ବର ।

କିନ୍ତୁ ବାହାଘରର ମାତ୍ର ବର୍ଷ ଦି'ଟା ପରେ କ'ଣ ହେଲା କେଜାଣି, ରଜ ବେଳକୁ ନୀଳନାନୀକୁ ନେଇ ଦାରୋଗାଭାଇ ଯାଇଥିଲା ଧାମରେଇ, ତା ବାପଘର ଗାଁକୁ । ଚାନ୍ଦବାଲିର ଉତ୍ତରକୁ ଧାମରେଇ ମୁହାଣ । ସବୁ ନଈ ସେଠି ମିଶିଛି ସମୁଦ୍ରରେ । ମୁହାଣରେ ବ୍ରିଟିଶ ଅମଳର ବିରାଟ ବତିଘର ଆକାଶୀ ଭୂତ ଭଳି ଠିଆ ହୋଇଛି । କେତେ ଝଡ଼ ବତାସି ସହି ବତିଘର ଆଲୁଅ ଦେଖେଇଚି ସମୁଦ୍ରି ଜାହାଜ ସବୁକୁ । କିନ୍ତୁ ତା'ର ବହୁତ ଆଗରୁ ଓଡ଼ିଶାରେ ରାଜାରାଜୁଡ଼ାଙ୍କ ଅମଳରେ ସାଧବମାନେ ଯେତେବେଳେ ଧାମରେଇ ମୁହାଣ ଛାଡୁଥିଲେ ପୂର୍ବ ସାଗରରେ ବୋଇତ ନେଇ ବଣିଜ କରିବାକୁ - ଜାଭା, ସୁମାତ୍ରା, ଲବଙ୍ଗ ଆଉ ଦାରୁ ଚିନିର ଦ୍ୱୀପସବୁକୁ ସେତେବେଳେ ବତିଘର ନ ଥିଲା । ଥିଲେ କେବଳ ମା'ମଙ୍ଗଳା - ସିଂହବାହିନୀ, ଚତୁର୍ଭୁଜା, ଅଭୟ ମୁଦ୍ରା ଆଉ ପଦ୍ମଧାରିଣୀ ସର୍ବମଙ୍ଗଳା । ବୋଇତିଆଳ ମାନେ ସବୁ ମାଝି । ସେଇ ମାଝିମାନେ କାଳେ ପାଇଥିଲେ ମା' ମଙ୍ଗଳାଙ୍କୁ ଆଜି ଯଉଁଠି ବତିଘର ଠିଆ ହୋଇଛି । ସେଦିନ କାର୍ତ୍ତିକ ପୂନେଇଁ । ଆଷାଢ଼ଠୁ କାର୍ତ୍ତିକ ଯାଏ ଓଡ଼ିଆ ସାଧବ ବଣିଜ କରି ଫେରି ଆସୁଛି ନିଜ ରାଇଜକୁ । ହଠାତ୍ ଉଠିଲା ଝଡ଼ ଯେ ସମୁଦ୍ର ଆକାଶ ହେଲା ଏକାକାର । ସାଧବ ଆଉ ମାଝି ଉଭୟ ହାତ ଟେକିଦେଲେ । ସେତିକିବେଳେ ବିଜୁଳି ମାରି ହାଲ୍ଲୋଳ କରି ଦେଲା ଚାରିଆଡ଼େ । ଦେଖିବାବେଳକୁ ବୋଇତରେ ବିଜୁଳିକନ୍ୟା ମା'ମଙ୍ଗଳାଙ୍କ ମୂର୍ତ୍ତି । ଆକାଶବାଣୀ ହେଲା- ମାଝି ! ମୋର ଏଇ ମୂର୍ତ୍ତିକୁ ତୁ ମୁହାଣ କୂଳରେ ରଖି ପୂଜା କରିବୁ । ପୁରୁଷମାନେ ମୋତେ ପୂଜା ନ କରି କରିବେ ତୋ ବଂଶର ବିଧବା ନାରୀମାନେ । ମୁଁ ଯେପରି ତ୍ରେତା ଆଉ ଦ୍ୱାପର ଯୁଗରେ ରକ୍ତଦନ୍ତିକା, ଶାକମ୍ଭରୀ, ଭ୍ରମରୀ, ଭୀମା ଏବଂ ଦୁର୍ଗା ରୂପରେ ଅବତୀର୍ଣ୍ଣ ହୋଇ ମୁନି ଋଷି, ସାଧୁସନ୍ଥ, ବ୍ରାହ୍ମଣ-ବୈଷ୍ଣବମାନଙ୍କୁ ରକ୍ଷା କରିବା ପାଇଁ ରାକ୍ଷସକୁଳ ସଂହାର କରିଥିଲି,

ସେହିପରି କଳିଯୁଗରେ ଓଡ଼ିଆ ସାଧବର ସବୁ ରିଷ୍ଟ ଖଣ୍ଡନ କରିବା ପାଇଁ ଏହି ମୁହାଣ କୂଳରେ ଢାମରେଇ ନାଁରେ ପ୍ରସିଦ୍ଧି ଲାଭ କରିବି । ଶ୍ରୀକ୍ଷେତ୍ରରେ ଯେପରି ଜାତିଭେଦ ନାହିଁ ଏଠି ମଧ୍ୟ ସେପରି ଜାତିଭେଦ ରହିବ ନାହିଁ । କୈବର୍ତ୍ତ କୁଳର ବିଧବା ନାରୀ ହେବ ମୋର ପୂଜାରିଣୀ । କଳିର କୈବର୍ତ୍ତକ କେଶବଙ୍କର ଅଂଶାବତାର । ଓଡ଼ିଆର ଧନ-ଜନ-ଗୋପଲକ୍ଷ୍ମୀଙ୍କୁ ବେପାର ବଣିଜରେ ଆଗେଇ ନେବାପାଇଁ କେଶବରୂପୀ କୈବର୍ତ୍ତମାନେ ବୋଇତ ସମ୍ଭାଳିବେ । ବୋଇତ କୂଳ ଛାଡ଼ିବା ବେଳେ ମୋତେ ତେଲ ହଳଦୀରେ ମାଜଣା କରି ଲାଲ ଶାଢ଼ି ଆଉ ମନ୍ଦାର ମାଳାରେ ଆଭରଣ କରିବେ । ଶ୍ରୀଫଳ ଫଟାଇ ଶୁଭଯାତ୍ରା ଆରମ୍ଭ କରିବେ । ମୋର ପ୍ରିୟ ନୈବେଦ୍ୟ ହେବ ଗୁଡ଼ ଲିଆ । ମୁଁ ହେବି ସର୍ବମଙ୍ଗଳା, ସର୍ବ ଶୁଭପ୍ରଦାୟିନୀ... । ଆକାଶବାଣୀ ବନ୍ଦ ହେଲା । ସାଧବପୁଅ ଗାଇଲା - ମାଲୋ ସର୍ବମଙ୍ଗଳା । ସର୍ବ ମଙ୍ଗଳ ମଙ୍ଗଲ୍ୟେ ଶିବେ ସର୍ବାର୍ଥ ସାଧିକେ ଶରଣ୍ୟେ ତ୍ର୍ୟମ୍ବକେ ଗୌରୀ ନାରାୟଣୀ ନମୋସ୍ତୁତେ । ବୋଇତିଆଳ ମାଝି ଗାଇଲା, ଜୟମା ମଙ୍ଗଳା ତୁଲୋ ପର୍ବତ ନନ୍ଦିନୀ, ଆର୍ତ୍ତଜନତ୍ରାଣ କରୁ ଶିବଙ୍କ ଘରଣୀ । ସେଇ ଦିନଠାରୁ ଢାମରେଇ ଧାମରେଇ ନାଁରେ ରହିଯାଇଛନ୍ତି ଏଇ ସମୁଦ୍ରକୂଳରେ । ଯେଉଁ ମାଝି ପହିଲୁ ଥାପିଥିଲା ମା ମଙ୍ଗଳାଙ୍କୁ ସେ ମରିଯିବା ପରେ ତା ସ୍ତ୍ରୀ ହେଲା ଆଦ୍ୟ ପୂଜାରିଣୀ । ଗୋଟିଏ ବଂଶ ବଢ଼ି କେତେ ନା କେତେ ବଂଶ ହେଇଛି । ବୋଇତ ବେଉସା ବନ୍ଦ ହୋଇଯିବା ପରେ ମାଝି ପୁଅ ମାଛ ମାରି ଜୀବିକା ପାଳୁଛି । ସେଇ ମାଝି କୁଳରେ ଦାରୋଗାଭାଇର ଜନ୍ମ ବୋଲି ସେ ଭାରି ଗର୍ବ କରେ ।

ସେଥର ଧାମରେଇରୁ ଫେରିବା ବେଳକୁ ଦାରୋଗା ଭାଇ ଥାଏ ଭାରି ଉଦାସ । ସବୁବେଳେ ଯେମିତି କ'ଣ ଭାବୁଛି । ଆଗଭଳି ଆଉ ହସ ଖୁସି ନାହିଁ କି ପରିଶ୍ରମ ନାହିଁ । ହପ୍ତେ ଦି' ହପ୍ତା ଖଣ୍ଡେ ଶୋଇରହିଲା । ପହିଲୁ ପହିଲୁ ଦୁଆରୀମାଉସୀ କିଛି କହେ ନାହିଁ । କିନ୍ତୁ ଶେଷକୁ ପାଟିତୁଣ୍ଡ କଲା, ମଲା ମୋର ବସି ଖାଇଲେ ନଈବାଲି ସରେ । ଜୋଇଁଙ୍କର କଣ ହେଇଛିକିଲୋ ନୀଳ । ନୀଳନାନୀ ପହିଲୁ ତ କହିଲା, ସେ କିଛି ଜାଣେ ନାହିଁ । ଦିହ ଖରାପ ଥିବ । ଧାମରେଇ ବତିଘରକୁ ରଜପରେ ପରେ ମାଛ ଧରି ଯାଇଥିଲେ ଯେ, ନୁହୁକି ଆରମ୍ଭ ହେଇଗଲା । ଦି'ଦିନ ଦି' ରାତି ଆଉ ଫେରି ନାହାନ୍ତି । ଇନ୍ଦ୍ର ହାତୀ ଶୁଣ୍ଢରେ ପାଣି ଢାଳିଲେ ତ ପବନ ବହିଲା ଅଣଚାଶ । ସବୁ ନଦୀ ଏକାକାର ହୋଇଗଲା । ପୂନେଇଁ ରାତିକୁ ଜୁଆର ବଢ଼ିଲା । ଧାମରେଇ ନଈରେ ଉଜାଣି ବହିଲା ସମୁଦ୍ର ପାଣି । ଗାଁ ଭାସି ଯାଉ ଯାଉ ରହିଗଲା ଅଳ୍ପ ଟିକକେ ଧାମରେଇଙ୍କ ଦୟାରୁ । ଯେଉଁ ଡଙ୍ଗା କେଇଟା ନେଇ ଦାରୋଗାଭାଇ ତା ସାଙ୍ଗମାନଙ୍କ ସହିତ ଯାଇଥିଲା ସେ ଡଙ୍ଗା ସବୁ କୁଆଡ଼େ ଛିନ୍ନଛତ୍ର ହୋଇଗଲା । ହେଲେ ପ୍ରାଣ ବଂଚେଇ ରହିଯାଇଥିଲେ ସେମାନେ । ନୁହୁକି ଥମିଲା ଦି ଦିନ ପରେ । ଗାଁରୁ ଅନ୍ୟମାନେ ଗଲେ ନାଆ ନେଇ ଖୋଜିବାକୁ । ମୁହାଣ କୂଳିଆ ମାଝିମାନଙ୍କ ପାଇଁ ଏସବୁ ନିତିଦିନିଆ ଘଟଣା । ଠାକୁରାଣୀ ଦୟାରୁ ବଞ୍ଚିଯାନ୍ତି କୈବର୍ତ୍ତମାନେ । ନିହାତି

ଯଦି କେହି କ'ଣ ଅତିରିକ୍ତ ପାପ କରିଥାଏ, ତା କଥା ଅଲଗା । ଦାରୋଗାଭାଇ ଆଉ ତା ସାଙ୍ଗମାନେ ସବୁ ଫେରି ଆସିଥିଲେ । ଦାରୋଗାଭାଇ ଥିଲା ନୀରବ । ତା ମୁହଁରେ କଥା ନାହିଁ । କିନ୍ତୁ ତା ସାଙ୍ଗ ତିନିଜଣ ଯାହା ଜାଣିଥିଲେ କହିଲେ - ଦାରୋଗା ଭାଇ କାଳେ ଦେଖିଥିଲା ବିରାଟ ଗୋଟାଏ ସୁନା ଇଲିଶି । ସମୁଦ୍ରରୁ ଯେଉଁ ବିରାଟ ହାତୀଶୁଣ୍ଢଟା ଉଠିଆସି ଅଜାଡ଼ି ହେଇ ପଡ଼ିଲା ବଡିଘର ଟାପୁରେ, ସେଇ ଶୁଣ୍ଢରେ ସେ ଦେଖିଲା ମାଈ ସୁନା ଇଲିଶିକୁ- ଇସ୍ ବାପ୍‌ବା, ଆଉଟା ସୁନା ଭଳି ତା ଦିହ ଖାଲି କଳାହାଣ୍ଡିଆ ମେଘରେ ବିଜୁଳି ଭଳି ଚକ୍ ଚକ୍ କରୁଥାଏ । କାତିଗୁଡ଼ାକ ଯେମିତି ଗୋଟାଏ ଗୋଟାଏ ଉଦିଆ ସୂର୍ଯ୍ୟ । ହାତୀ ଶୁଣ୍ଢଟା ଯିମିତି ପିଟି ହେଇ ପଡ଼ିଲା ଟାପୁ ଉପରେ ସିମିତି ମାଇଲା ଚକ୍‌କିନା ବିଜୁଳିଟାଏ ଆଉ ତା ସାଙ୍ଗକୁ ଆକାଶରୁ ସମୁଦ୍ରକୁ ଲମ୍ବି ଆସିଲା ଇନ୍ଦ୍ରଙ୍କ ବଜ୍ର । କଡ଼ାକ୍ କରି ମାରିଦେଲା । ବଡିଘରେ ଆଶ୍ରା ନେଇଥିବା ମାଝିମାନେ ଆଖି କାନ ବୁଜିଦେବା ବେଳେ ବେପରୱା ଦାରୋଗାଭାଇ ଆଖି ଖୋଲି ଦେଖିଲା - ସେଇ ବିରାଟ ମାଈ ସୁନା ଇଲିଶିଟା ତଳେ କଚାଡ଼ି ହେଇ ପଡ଼ିବା ବେଳକୁ ଗଦା ହୋଇଗଲେ ଛୋଟ ଛୋଟ ପିଲାପିଚିକା ସୁନା ଇଲିଶିସବୁ । ମା' ଲକ୍ଷ୍ମୀଙ୍କ ଐଶ୍ୱର୍ଯ୍ୟ କଳସରୁ ଅସରିପି ସବୁ କୁଢ଼ କୁଢ଼ ଗଦା ହୋଇଯିବା ଭଳି । ହେଲେ ଆଖିପିଛୁଳାକେ ସବୁ ଚାଲିଗଲେ ସେଇ ସମୁଦ୍ର ଭିତରକୁ । ଉପରେ ଖାଲି ଫେଣଗୁଡ଼ା ଗଦା ହେଇ ରହିଲା ଆଉ ତା ସାଙ୍ଗକୁ ସମୁଦ୍ର ଶାମୁକା ଶଙ୍ଖ ଗଦା ଗଦା ।

ପହିଲୁ ଥର ପାଇଁ ଯେ ଦାରୋଗାଭାଇ ସୁନା ଇଲିଶି ଦେଖିଥିଲା ତା ନୁହେଁ । କୈବର୍ତ୍ତକ ମାଝିମାନଙ୍କର ବଡ଼ବଡୁଆ ସବୁ ଯେଉଁମାନେ ବୋଇତ ନେଇ ସାଧବପୁଅ ସାଙ୍ଗରେ ଯାଇଛନ୍ତି ଦେଶ-ଦେଶାନ୍ତର, ଦ୍ୱୀପ-ଦ୍ୱୀପାନ୍ତର ସେମାନଙ୍କଠୁଁ ଆରମ୍ଭ କରି ଦାରୋଗାଭାଇର ଗୋସ-ପଣଗୋସାପ ମହଲ ପର୍ଯ୍ୟନ୍ତ ଏଇ ସୁନା ଇଲିଶି କଥା ସଭିଏଁ ଜାଣନ୍ତି । ତାଙ୍କ ଭିତରୁ କେତେକେ ଦେଖିଛନ୍ତି ମଧ୍ୟ । ସୁନା ଇଲିଶି ଦେଖିବା ଲୋକର ବଢ଼ନ୍ତି ହୁଏ ବୋଲି ସେମାନେ ଅଙ୍ଗେ ନିଭେଇଛନ୍ତି । ହେଲେ ତାକୁ ଧରିବା ପାଇଁ ଯଉଁମାନେ ଲାଗିଛନ୍ତି, ସମସ୍ତେ ଯାଇଛନ୍ତି ପାଣିରେ ତଳିତଳାନ୍ତ ହେଇ । ଯାଆନ୍ତେ ନାହିଁ ? ସୁନା ଇଲିଶି ଆଉ କିଏ କି ? ସିଏ ପରା ଖୋଦ୍ ଲକ୍ଷ୍ମୀଙ୍କ ଭଉଣୀ ସବୁ । ଲକ୍ଷ୍ମୀ ତ ସାଗର ଦୁଲଣୀ । ସମୁଦ୍ର ମନ୍ଥନ କରି ବିଷ୍ଣୁ ସିନା ତାଙ୍କୁ ଉଠେଇ ଆଣି ଘରଣୀ କଲେ ବୈକୁଣ୍ଠରେ । ହେଲେ ବିଷ୍ଣୁ ଯେତେବେଳେ ମତ୍ସ୍ୟ ଅବତାର ଧରିଥିଲେ ସେତିକିବେଳେ ଲକ୍ଷ୍ମୀଙ୍କ ଏଇ ଭଉଣୀମାନଙ୍କୁ ନେଇ କେଳି କରିଥିଲେ । ଦ୍ୱାପରରେ ଗୋପୀ ଯିଏ । ସତ୍ୟରେ ସୁନା ଇଲିଶି ସିଏ । ଶାଳୀ ଭିଣୋଇଙ୍କର ପୀରତି ଠଉଁ କଣ ଅଧିକ ସୁଖ ଆଉ କଉଁଠି ଅଛି ? ଖୋଦ୍ ବିଷ୍ଣୁ ବି ସେଥିରେ ଭୋଳ । ମଣିଷ କଥା ବା କିଏ ପଚାରେ ? ପୁରୁଖା ମାଝିମାନଙ୍କର ବଡ଼ବଡୁଆମାନେ ଦେଶବିଦେଶ ପୁରାଣରୁ ସବୁ ଏକଥା ଶୁଣିଛନ୍ତି ବୋଲି କହନ୍ତି । ଏକଥା ମିଛ ନୁହେଁ । ଏଣୁ ସୁନା ଇଲିଶି ଦେଖିବା ଶୁଭ- ମହାଶୁଭ । କିନ୍ତୁ ବାବା ତାକୁ ଧରିବା ଆଶା କର ନାହିଁ । ଶେଷ ହେଇଯିବ ।

ଦାରୋଗାଭାଇ କିନ୍ତୁ ଶେଷ ହେଇଯିବାକୁ ଆଦୌ ପରୱା କଲା ନାହିଁ । ସେ ଜିଦ୍ ଧରିଲା ଝଡ଼ ଥମିବା ପରେ ସେ ବଡିଘରେ ରହିବ ଏବଂ ଯେମିତି ହଉ ସେଇ ସୁନା ଇଲିଶିକୁ ସେ ଧରିବ । ତା ସାଙ୍ଗମାନେ ତାକୁ ବୁଝେଇ ଶୁଝେଇ ଏ ପାଗଳାମି ବନ୍ଦ କରିବା ପାଇଁ କହିଲେ । ଶେଷରେ ଏକରକମ ତାକୁ ଜୋର୍ କରି ଉଠେଇ ଆଣିଥିଲେ । ତା'ପରେ ଆଉ ବେଶି ଦିନ ସେଠାରେ ନ ରଖି ନୀଳନାନୀ ତାକୁ ନେଇଆସିଲା ଗଣ୍ଡେଶ୍ୱରପୁରକୁ ।

ଗଣ୍ଡେଶ୍ୱରପୁରରେ ଏଇମିତି ମନ ମାରି ଦି ତିନି ହପ୍ତା ରହିବା ପରେ ହଠାତ୍ ଦିନେ ଦେଖାଗଲା ଦାରୋଗାଭାଇ ଆଗଠାରୁ ଦିଗୁଣ ଚଞ୍ଚଳ ହେଇ ଉଠିଛି । ପହିଲୁ ଶ୍ରାବଣରେ ସେ ବର୍ଷ ସର୍ବତ୍ର ଲଗାଣ ହେଇଗଲା । ସାତଦିନ ସାତ ରାତି ନୁହୁକି ସାଙ୍ଗକୁ ସାଳିଆ ନଈରେ ପାଣି ଯେ ଅକାତକାତ । ମହାଦେବଙ୍କ ଗଣ୍ଡରେ ପାଣି ଖାଲି ଭଉଁରି ଖେଳୁଥାଏ । ନଈ ସେପାରିଆ ଯିଏ ଯୁଆଡ଼େ ଥିଲେ ଅଟକ ହେଇ ରହିଗଲେ ହପ୍ତେ । ସେ ଯଉଁ ଫେଣ ସବୁ କୁନ୍ଦ ଭଳି ଭାସିଯାଉଥାଏ ତା'ରି ଭିତରେ ଜନ୍ଦା ପିମ୍ପୁଡ଼ି ଗଦା ଗଦା । ମହାଦେବଙ୍କ ବରଗଛ ଉପରେ ଚଢ଼ି ଅନେଇଲା ବେଳକୁ ସାଳିଆ ନଈ ଗର୍ଜି ଘୁମୁରି ଦି'କୂଳକୁ ଯିମିତି ଭସେଇ ନବ ବୋଲି ମାଡ଼ି ଯାଉଥାଏ । ବେଳେବେଳେ ନଈ ମଝିରେ ଭାସିଯାଉଥାଏ ବଡ଼ ବଡ଼ ଗଛ ସାଙ୍ଗକୁ ଚାଳ ମଥାନ ଗୋଟା ଗୋଟା । ଗେରୁଆ ପାଣିରେ ସାଳିଆ ନଈ ଜିଭ ଲହ ଲହ କରୁଥାଏ ଗୋଟା ଗଣ୍ଡେଶ୍ୱରପୁରକୁ ଚାଟି ନବ ବୋଲି । ଝଡ଼ ଥମିବା ପରେ ହଠାତ୍ ପ୍ରଚାରିତ ହେଇଗଲା ଯେ ଦାରୋଗାଭାଇ ସାଳିଆ ନଈରେ ସୁନା ଇଲିଶି ଦେଖିଛି । ଅବଶ୍ୟ ସମୁଦ୍ର ଇଲିଶି ଭଳି ଏତେ ବଡ଼ ନୁହେଁ । ତେବେ ଏକା ଜାତି । ଏଇ ଝଡ଼ ଭିତରେ ସେ ବଡ଼ ଆଶା ନେଇ ଗଣ୍ଡେଶ୍ୱର ମହାଦେବଙ୍କ ମନ୍ଦିରରେ ଅଧିଆ ପଡ଼ିଥାଏ ସୁନା ଇଲିଶିର ଦେଖା ପାଇବ ବୋଲି । ହଠାତ୍ ଦିନେ ରାତି ପାହାନ୍ତାକୁ ଆଖି ଟିକିଏ ବୁଜି ବୁଜି ଆସିଛି । ମେଘ ଟୁପୁରୁ ଟୁପୁରୁ ଚାଲିଛି । ଝଡ଼ଟାର ବେଗ କମିଗଲେ ବି ନୁହୁକି ବତାସ କମି ନାହିଁ । ତାକୁ ଲାଗିଲା ଯେମିତି ଜାଗାଟା ହାଲୋଳ ହେଇଯାଇଛି ଆଉ ତା ସାଙ୍ଗକୁ ଗୋଟାଏ ବିଚିତ୍ର ଗନ୍ଧ- ଯେମିତି ସଜ ମାଛ ଦିହରେ ଚମ୍ପାଫୁଲ ଫେଣ୍ଟାଫେଣ୍ଟି । ଫଟ୍‌କିନା ଚାହିଁଦେଲା ବେଳକୁ ମହାଦେବଙ୍କ ମୁଖଚାଳିର ପଶ୍ଚିମପଟ କଡ଼ରେ ଶୋଇଛି ମାଈ ସୁନା ଇଲିଶିଟାଏ ପାଟି ପାକୁ ପାକୁ କରି । ଯିମିତି କଣ କହୁଛି କାହାକୁ । ଦାରୋଗାଭାଇକୁ ଲାଗିଲା ସେ ଯିମିତି ଡାକୁଛି ତାକୁ । ଆ ମୋ ସଙ୍ଗେ ଆ । ମାଟିର ଦୁନିଆରେ ସୁଖ ନାହିଁ । ପାଣିର ଦୁନିଆରେ କେତେ ସୁଆଦ । ପହଁରି ପହଁରି ସାଉଁଟି ନବା ନାନା ଜାତିର ଶିଉଳି । ତୁ ମୋତେ ମୋତିର ମାଳା କରି ପିନ୍ଧାଇ ଦେବୁ ଆଉ ମୁଁ ତୋତେ ପିନ୍ଧେଇ ଦେବି ଫେଣର ମୁକୁଟ । ହାତ ଧରାଧରି ହୋଇ ଆମେ ଖେଳିବା ଚକାଭଉଁରି । ପାଣିର ଏଇ ଘୁମରି ଜାଲ ଭିତରେ । ମାଛ ମାରିବାର ଏଇ ଦୁନିଆ ଭିତରୁ ବାହାରି ଆସି ମାଛର ଦୁନିଆ ଭିତରେ ଥରେ ମିଶିଯା ... ଦାରୋଗାଭାଇ ବିଜୁଳି ଭଳି ହାତଟାକୁ ବଢ଼େଇ ଦେଇ ମାଡ଼ି ବସିବା ଆଗରୁ ଇଲିଶିଟା ଡେଇଁ ପଡ଼ି

ଗଣ୍ଡର ଭଉଁରି ଭିତରେ ଉଭାନ୍ ହୋଇଯାଇଥାଏ । ଦାରୋଗାଭାଇର ଦେହଟା ଝାଳରେ ଜୁଡୁବୁଡୁ । ସେ ଦୀର୍ଘ ନିଃଶ୍ୱାସଟାଏ ଛାଡ଼ି ସେଇ ଗଣ୍ଡ ଆଡ଼କୁ ଚାହିଁରହିଲା । ଯିମିତି ସ୍ୱର୍ଗର ଅପ୍‌ସରୀଟା ଟିକକୁ ଖସିଗଲା ତା' ହାତରୁ ।

ସେଦିନ ବେଳ ଓଳିକୁ ଝଡ଼ ଥମିଲା । ଆକାଶ ପରିଷ୍କାର ହୋଇ ନ ଥାଏ । ଚିତଉ ଅମେଇସିଆ ଆଗ ଦିନ କାନକୁ କାନ ଚରିଗଲା ଦାରୋଗାଭାଇର ଏହି ସଦର୍ପ ସଫଳ ଅଭିଯାନ କଥା । ତା କଥା ଅବିଶ୍ୱାସ କରିବାର ନୁହେଁ । ଗାଁ ପିଲାଏ ଭାରି ଖୁସି । ସାଳିଆ ନଈରେ ବି ସୁନା ଇଲିଶି ଅଛି । ଗାଁ ପାଇଁ ନିଶ୍ଚୟ ଶୁଭ । କିନ୍ତୁ ରାତି ପାହି ସୂର୍ଯ୍ୟ ଉଇଁଲା ବେଳକୁ ଗାଁ ଯାକ ହୈ ଚୈ । ଦାରୋଗାଭାଇ କାଲି ରାତିରୁ କୁଆଡ଼େ ଚାଲିଯାଇଛି । ନୀଳନାନୀ କାନ୍ଦି କାନ୍ଦି ବେହୋସ । ଦୁଆରୀମାଉସୀ ଖାଲି କୋଡ଼ିକଚାଡ଼ି ହଉଛି । ମୋ ଦାରୋଗାରେ, ମୋତେ ଭସେଇ ଦେଇ କୁଆଡ଼େ ଗଲୁରେ... କେତେ ଭରସାରେ ତୋତେ ଆଣିଥିଲି ରେ, କଉଁ ଡାହାଣୀ ତତେ ପାଲରେ ପକେଇଲାରେ... ଶୁଣୁ ଶୁଣୁ କ'ଣ ନା- ଯେତେ ମନା କଲେବି ସୁନାଇଲିଶି ଧରିବ ବୋଲି ଦାରୋଗାଭାଇ କାଲି ଅଧରାତିରୁ ଉଭାନ । ଆଜି ସକାଳୁ ଚାରିଆଡ଼ ଖୋଜା ସରିଲାଣି । ସମସ୍ତଙ୍କର ସନ୍ଦେହ ସୁନା ଇଲିଶି ତାକୁ ନଈକୁ ଟାଣି ନେଇଛି । ଦି'ପହର ବିତିଗଲା କିଛି ଖବର ନାହିଁ । ଶେଷକୁ ବେଳ ରତରତ ହେବା ବେଳକୁ ତଳ କୁମ୍ଭାରସାହିଆ ଆସି ଖବର ଦେଲେ ଯେ ତାଙ୍କ ସାହି ପାଖ ତଣ୍ଡିବଣରେ ଦାରୋଗାଭାଇର ଶବଟା ଲାଗିଯାଇଥିଲା । ସେମାନେ ତାକୁ ଉଠାଇ କୂଳରେ ପକେଇ ଦେଇଛନ୍ତି ।

ନୀଳନାନୀର ଜୀବନରେ ଆଉ ଗୋଟାଏ ଅଧ୍ୟାୟ ଏମିତି ଅଧାରୁ ଅଲେଖା ରହିଗଲା । ସେ ଭାବିଥିଲା ଦାରୋଗାଭାଇ ସାଙ୍ଗରେ ସତୀ ହବ । କିନ୍ତୁ ସେ ପଣ ଛାଡ଼ିଦେଇ ସ୍ଥିର କଲା ଯଉଁ ସୁନା ଇଲିଶି ପାଇଁ ଦାରୋଗାଭାଇ ଯାଇଛି ସେ ସେଇ ସୁନା ଇଲିଶିକୁ ଧରିବ, ଧରିବ, ଧରିବ । ତା ଧଳା ଶାଢ଼ିରେ ସବୁବେଳେ ପଡ଼ିଥାଏ ତିନିଟା ଗଣ୍ଠି । ସେ ଆମିଷ ଛାଡ଼ିଲା । କୁଳ ବେଉସା ଛାଡ଼ିଲା । ବାର ମାସରେ ତେର ଉପାସ କଲା । ନୀତିନିୟମରେ ବିଧବା ବ୍ରାହ୍ମଣୀଙ୍କୁ ବି ବଳିଗଲା । ତା' ମା' ମରିଯିବା ପରେ ଧାମରେଈରୁ ଦେଢ଼ଶୁରର ପୁଅକୁ ଆଣି ପୁଅ କଲା । ମଫସଲ ଯିବା ବନ୍ଦ କରି ଦାଣ୍ଡ ଆଗରେ ଛୋଟ ଦୋକାନଟିରେ ବାଦମ, ବୁଟ, ଚନାଚୂରଠାରୁ ଆରମ୍ଭ କରି କୁଣ୍ଡା, ଚାଉଳ, ଅଟାର ଟୁକୁରୁ ମୁକୁରୁ ବେଉସାଟିଏ କଲା । କିନ୍ତୁ ତା'ର ସେଇ ନିଃସଙ୍ଗ ଜୀବନ ଭିତରେ ଆର୍ଥିକ ସ୍ୱଚ୍ଛଳତା ଥିଲା ନିତାନ୍ତ ଅପାଂକ୍ତେୟ । ସେ ଖୋଜୁଥିଲା ଅନ୍ୟ କିଛି । ଦାରୋଗାଭାଇ ଛାଡ଼ିଯାଇଥିବା ଉତ୍ତରଦାୟିତ୍ୱର ପରିପୂର୍ତ୍ତି । ଏଇ ଦାୟିତ୍ୱବୋଧର ଭାବନାରେ ତା'ର ଅନ୍ତରର ଶୁଦ୍ଧତା ପ୍ରକାଶିତ ହେଉଥିଲା ଏକ ତପସ୍ୱିନୀର ଭାବମୂର୍ତ୍ତି ନେଇ ।

କିନ୍ତୁ ସେଇ ଦୀର୍ଘ ପ୍ରଶ୍ନବାଚୀର ଉତ୍ତର ଏବେବି ମିଳି ନାହିଁ- ନୀଳନାନୀ ମଲା କେମିତି ?

[୧୯୯୮]

# ପ୍ରଶାନ୍ତ ସମୁଦ୍ର : ଅଶାନ୍ତ ଲହରୀ

ଇନ୍ଦୁପୁରଠାରୁ ନାଆରେ ଉଠି ଭଙ୍ଗା କେନାଲ ବନ୍ଧ ପାରି ହୋଇ ବିଲରେ ପଶିବା ବେଳକୁ ଭୋଦୁଅ ମାସର ଅଧୁଆଣି ଟାଇଁସିଆ ଖରାଦିନେ ପାଣିର ସମୁଦ୍ର ଭିତରେ ଚାରିଆଡ଼େ ଖାଲି ଗେରୁଆ ଗେରୁଆ ତରଳ ଲାଭାର ଅଣଲେଉଟା ସୁଅ ଦମକା ଦମକା ଅଝାଲ ଛିଡ଼ା ପବନ ଭିତରେ ଭଉଁରୀ କାଟି ନାଚିକୁଦି ଗର୍ଜି ଗୁମୁରି ମାଡ଼ିଯାଉଛି ଯୁଆଡ଼େ ଇଚ୍ଛା ସିଆଡ଼େ ଆକାଶ ଆଉ ସମୁଦ୍ରକୁ ସମୁଦ୍ର ଆଉ ପୃଥିବୀକୁ ଏକାକାର କରି । ସବୁଜ ଆଉ ଧୂସରକୁ ଜୀବନ ଆଉ ମୃତ୍ୟୁକୁ ଏକାକାର କରି ସୁଅ ଛୁଟିଛି ଦୂରକୁ ଦୂରକୁ । ଦିଗରୁ ଦିଗନ୍ତଯାଏ ଅକାତ ଜଳାର୍ଣ୍ଣବ ଭିତରେ ଏଠିସେଠି କେତେଟା ଅର୍ଜୁନ ଆଉ ପୁଣ୍ଡିଆ ଗଛର ଆକାଶଛୁଆଁ ଶିଖର ଉପରେ ଚକ୍କର କାଟୁଛନ୍ତି ପଞ୍ଝା ପଞ୍ଝା ବିଲୁଆ ଆଉ ଶାଗୁଣା । ଝୋଲାମରା ଦେବଦାରୁର ସବୁଜ ପତ୍ରଗହଳରେ ଚିକିରିମିକିରି କେଇଟା ବଣି ଆଉ ଦୁଃସାହସିକ ବାଳତର ପରି ଠିଆ ହୋଇଥିବା କେଇଟା ତାଳଗଛର ବାହୁଙ୍ଗାରେ ଦୋଳି ଖେଳୁଥିବା ଦଳ ଦଳ ବାଉ । ନାଉରିଆ ତାଜୁବ ଆଖିରେ ଚାହିଁଲା । ପଲ ପଲ ଛାଇ ପରି ମଣିଷ ମହୁମାଛି ପରି ମେହେନତ କରନ୍ତି ଏଇଠି- ଜାଡ଼ଦିନେ ରାହାସ ପୂନେଇଁ ପରଠୁ ହାଟ ବସେ । ରାଶି ରାଶି ସୋରିଷଫୁଲର ହଳଦୀ ଗରଗର ଶାଢ଼ି ପିନ୍ଧି ଏଇ ଇନ୍ଦୁପୁର ହାଟ ମଗୁଶିରର ପହିଲୁ ଗୁରୁବାର ଦିନ ଜାଙ୍ଗଲୁ ଜାଙ୍ଗଲୁ ରାତି ପାହାନ୍ତାର କାକରପଖଳା ଦେହରେ ଶିରି ଶିରି ପବନରେ ଥିରି ଥିରି ହଲି ହଲି ଲକ୍ଷ୍ମୀ ଠାକୁରାଣୀଙ୍କୁ ଓଳଗି ହୁଏ । ଗହଳଚହଳ ଆମ୍ବ ପୁନାଙ୍ଗର ତୋଟା ଭିତରେ ମାଛି ଅନ୍ଧାରରୁ ଶୁଭେ ଶଙ୍ଖ ହୁଳହୁଳୀ ଡକାହକା ଆଉ କାହାଘରେ ନୂଆ ହୋଇ ଆସିଥିବା ଟିକି ବୋହୂଟିର ଡରୁଆ ଡରୁଆ ପାଦର ପାହୁଡ଼ ଝୁଣ୍ଟିଆ ରୁଣୁଝୁଣୁ ରୁଣୁଝୁଣୁ । ନୂଆ ହେଇ ମାଟି ଛୁଇଁଥିବା କଅଁଳ ପିଲାର କୁଆଁ କୁଆଁ ଭିତରେ ମଗୁଶିରର ପହିଲୁ ସକାଳ ଆଖି ମେଲେ ଅନେକ ଆଶାର ପସରା ସଜେଇ । ତା ପରେ ଚାଲେ ବେଉଷଣ କିସମ କିସମର । ପଉଷ-ମାଘରେ ଧଣିଆ, ଫଗୁଣ-ଚଇତରେ କଣ୍ଟିଆଳ କାକୁଡ଼ି, ତା ପଛକୁ ବୋଇତିକଖାରୁ, ପୋଟଳ, ଖରାଦିନିଆ କଳା ମଚମଚ ତରଭୁଜ ପଛକୁ ହଳଦୀମଖା ଫୁଟିକାକୁଡ଼ି ଆଷାଢ଼ର ଗୁଣ୍ଡିଚା ଯାଏ । ପାଚିଲା ଆମ୍ବ ପଣସର ବାସ୍ନା ଭିତରେ ଏଠି ଅସୁମାରି ମଣିଷ ମନର ସପନ ଉଡ଼ିବୁଲେ କେବେ ଚଇତାଳି ହାୱା ଭିତରେ କେବେ ବା ବଇଶାଖୀ ଝାଞ୍ଜି ଭିତରେ ବଡ଼ ହେବାର । ଅନେକ ବଡ଼ ହେବାର । ସେଇ କୁଢ଼ କୁଢ଼ ଆଶାର ବାଲି ପାହାଡ଼କୁ ଧସେଇ ଏକାକାର

କରି ସେଇ ସୁନାର ଫସଲ ଉପରେ ଆଜି ଛୁଟିଛି ବ୍ରାହ୍ମଣୀ ଆଉ ଖରସୁଆଁର ତତଲା ଖଇରିଆ ସୁଅ; ଅକଳନ୍ତା ମଣିଷ ଆଖିର ଲୁହ । ଟକମକ ହେଇ ଫୁଟୁଥିବା ଦିହର ଲହୁ ଆଉ ଫାଟି ପଡୁଥିବା ଛାତିର କୋହକୁ ହଜମ କରି କେଉଁ ଜଙ୍ଗଲ ମୁଲକରେ ମହୁଆ ନିଶାରେ ମାତାଲ ହୋଇ ମାଦଳ ବଜେଇ, ଧୁମସା ବଜେଇ ବେଦମ ନାଚର ସୁଅ ଛୁଟିଛି । ରାଉ ରାଉ ମଣିଷର ସୁଅକୁ ଦଳି ମକଚି ସୁଅ ଛୁଟୁଛି । ଏ ସୁଅ ପ୍ରଳୟର । ମର୍ତ୍ତ୍ୟ ଆଉ ପାତାଳକୁ ଓଲଟପାଲଟ କରି ଏ ସୁଅ ଧାଉଁଛି ଆକାଶକୁ । ଯିମିତି ପାହାଚ ପାହାଚ କରି ଉଠିଛି ଉପରକୁ ଖୁବ୍ ଦୂରରେ ସମସ୍ତଙ୍କ ଅଲକ୍ଷ୍ୟରେ ଯେଉଁଠି ଆକାଶ ମିଶିଛି ଏଇ ଜଳାର୍ଣ୍ଣବ ଦିହରେ । ସବୁ ହେବ ଏକାକାର । ଥାନ ବେଥାନ, ଉଚ୍ଚ ନୀଚ, କଳା ଗୋରା ନ ଥିବ ବେଦର ବିଚାର, ସର୍ବେ ହୋଇବେ ଏକାକାର । ଭାଗବତ ବାଣୀ ଇଏ ଭାଗବତ ବାଣୀ ।

ଅଚାନକ ଦାସେ ଆପଣେ ପାଟି କରି ଉଠିଲେ, ହେ ନାଉରିଆ, ଆରେ ନାଆ ଲଗା ନାଆ ଲଗା । ଏ ବେଳରେ ଏମିତି ଚାହିଁଛୁ କ'ଣ ବା ?' ନାଉରିଆ ହଠାତ୍ ଚମକିପଡ଼ି ଉପର ମୁଣ୍ଡକୁ ଚାହିଁଲା - ପ୍ରକାଣ୍ଡ ଗୋଟାଏ ମହା ନିମ୍ବଗଛରୁ ଅଧେ ବୁଡ଼ି ରହିଛି ପାଣିରେ । ତା'ପରେ ନଡ଼ା ଛପରରୁ କେଞ୍ଚ ହେଇ ଲାଗିଛି କାଣିଚାଏ । ନିମ୍ବଗଛର ଡାଳକୁ ଧରି ପାଞ୍ଚହାତ ମରଦଟାଏ ନେସି ହୋଇ ଅଟକିଛି ଚାଳ ଉପରେ ଆଉ ତା ଉପରକୁ ଲାଗି ମାଇପିଟିଏ ଜାକି ଧରିଛି ବରଷେ କି ତେର ମାସର ଟିକି ପିଲାଟିକୁ ବାଁ ହାତରେ ଆଉ ଡାହାଣ ହାତରେ ଧରିଛି ମଣିଷର ଅଣ୍ଟାକୁ, ଦିହିଁଙ୍କିଯାକ ଦିହରେ ଲୁଗାପଟା ବେଖାବ । ଗଛଟା ସଭିଙ୍କୁ ନେଇ ଭାସି ଆସୁଛି ବୁଡ଼ି ଉଠି କେଉଁଠି କିମିତି ଭଉଁରି ଭିତରେ ଅଣେଇ ହୋଇ, ଟାଣିଓଟାରି ହୋଇ ଆଗକୁ... ଆଗକୁ... ମହାପ୍ରଳୟର ସୁଅମୁହଁକୁ । ନାଆଟାଯାକର ଲୋକେ ପାଟି କରି ଉଠିଲେ - ଆରେ ନାଆ ଲଗା, ଆରେ ନାଆ ଲଗା । ଏଇବେଳୁ ତ ଏମିତି । କେତେଦିନ କେତେ ରାତି ବିତିବ । କଣ ତୁ କରିବୁ ? ଭିଡ଼ କାତ, ଦି ଭିଡ଼ାକେ ନାଆ ଲାଗିଲା । ସୁଅ ମୁହଁରେ ମଣିଷ ଦେଖି ମିଣିପେ ମାଇପ ଦିହିଁଙ୍କ ପିଞ୍ଜରା ଭିତରୁ ଆସିଲା କୋହ, ସକସକ କାନ୍ଦଣା । ପାଟି କରି କାନ୍ଦିବାକୁ ବଳ ନାହିଁ । ଛୁଆଟା ପାତି ପିଲା ପରି ମା'ର ଚୋପରା ଥନରୁ ଗୋଟାକୁ କାମୁଡ଼ି ଆରଟାକୁ ଧରି ଲାଖି ରହିଛି, ଛାତିରେ ଦିହରେ ଯିମିତି ତା'ର ଜୀବନ ଯିବାକୁ ବାଟ ଖୋଜୁଛି । ଗଲା ରାତିଯାକର ତୁହାକୁ ତୁହା ବରଷା ଆଉ ହଲପା ହଲପା ପବନ ଭିତରେ ତିନିହେଁ ଯାକ ମୁର୍ଦ୍ଦାରିଆ ଶେଥା । ନାଆଟା ଲାଗୁ ନ ଲାଗୁଣୁ ନୀଳକଣ୍ଠ ଆଉ ଅନନ୍ତ ମିଶ୍ରେ ଆଗ ଗଛଟାକୁ ଭିଡ଼ି ଧରିଲେ । ନାଉରିଆ କାଠ ଠେସିଲା ଆଉ ଦାସେ ଆପଣେ ଅଥୟ ହୋଇ ମାଇପିର ଛାତିରୁ ଛୁଆଟାକୁ ଟାଣିଆଣିଲେ । ହଡ଼ା ଗାଈ ଦିହରେ ଲାଗିଥିବା ଟିଙ୍କଟେ ପରି ଛୁଆଟା ଯେମିତି ଖାଲି ନାଁକୁ ଲାଗିଥିଲା । ସୋର ନାହିଁ, ଶବଦ ନାହିଁ । ଛୁଆଟାର ରାହା ନାହିଁ । ମାଇପିଟା ବେଥାନ ଦିହରେ

କାଣିଚାକ କୋତରାକୁ ବେଢ଼େଇ ଦେବାକୁ ଚେଷ୍ଟାକଲା । ଦାସେ ପିଲାଟାକୁ ଛାତିରେ ଜାକି ଧରି ଭୋ ଭୋ ରଡ଼ି କଲେ- ଇଏ କଣ ହେଉଛିରେ, ମୋ ଧନର, ମୋ ମାଣିକର, ମୋ ଜୀବନର ଇଏ କ'ଣ ହେଇଚି ରେ- ହା-ହା ଭଗବାନ୍ ଯେ ସବୁ ଦେଖିବାଯାଏ ଜୀବନ ରହିଛି ! ହୋ ନୀଳକଣ୍ଠ, ଦିଅ ଦିଅ ତୁମ ହୋମିଓପାଥିରୁ ଟିକିଏ ମୋ ସଙ୍ଖାଳି ମୁହଁରେ । ମିଶ୍ରେ ଦେଖନ୍ତୁ ଟିକିଏ ଆପଣ ମୋ ଭାଇଭଉଣୀ ଦୋଟିକୁ । ଦେରେ ନାଉରିଆ ଛାଡ଼ ସେ ଗଛ । ଯାଉ ଭାସିଯାଉ ସିଏ କାଳ ମୁହଁରେ । ଭିଡ଼ କାତ ଆଗକୁ । ଛୁଆଟା ଯିମିତି ଏଥର ଲୁଣ ଛାଟମରା ଜୋକ ଟିକକ ପରି ଥରିଲା ଥରିଲା ହେଲା । ଆଉ କଅଁଳିଆ ମୂଷା ଛୁଆଟେ ପରି ମିଞ୍ଜି ମିଞ୍ଜି ଚାହିଁ ଚିଁ ଚିଁ ହେଲା । ନୀଳକଣ୍ଠ କ'ଣ ଟିକିଏ ଅର୍କ ଦେଲେ ତା ପାଟିରେ । ବାପାମା ଦୋଟି କପାଳରେ ହାତ ତାଡ଼ି ଡଙ୍ଗା ଭିତରେ ଗୋଟାଏ କଣରେ କଣେ ହେଇ ବସିଥାନ୍ତି । ଆଖିରେ ଲୁହ ନାହିଁ, ସବୁ ଶୁଖିଯାଇଛି ପରା ! ଖାଲି ବକଟେ ବକଟେ ଜୀବନ ମୁହଁ ପାଖରେ ସୁକୁ ସୁକୁ, ଛାତି ପାଖରେ ଯା ଦୁକୁ ଦୁକୁ ହଉଚି । ନୀଳକଣ୍ଠ ସେ ଦୁହିଁଙ୍କୁ ଔଷଧ ଦେଲେ । ନାରଣ ନନ୍ଦଙ୍କୁ ମନା କଲେ ଖାଇବାକୁ ଦବାପାଇଁ । ସେମାନେ ଶୁଅନ୍ତୁ । ଟିକିଏ ପରେ । ଦିନ ଯିବାବେଳକୁ ଯାହା । ଦାସେ ପିଲାଟିକୁ ସେମିତି ଛାତିରେ ଜାକି ଧରିଥାନ୍ତି । ଆଖିରୁ ଲୁହ ବୋହିଯାଉଥାଏ, ଭାଷା ନାହିଁ । ଆଉ ଆଗକୁ ଚାହିଁ କଣ ଯେପରି ମନେ ପକାଇବା ପରି ଖୋଜୁଥାନ୍ତି । ସୁଅ ଛୁଟୁଥାଏ । ଓଲିଆ ଓଲିଆ ଫେଣ ଭସେଇ ପଚି ଫୁଲି ଟୁଣୁକା ଟୁଣୁକା ହେଉଥିବା ଗୋରୁ, ଛେଳି ଆଉ ମେଣ୍ଢାଙ୍କ ମଢ଼ ଭସେଇ ସୁଅ ଛୁଟୁଥାଏ ଆଗକୁ... ଆଗକୁ । ନାଉରିଆ କାତ ମାରୁଥାଏ । ପାଣି କେଉଁଠି କାତେ, କେଉଁଠି ତିନିକାତତ କେଉଁଠି କିମିତି ଅକାତ । ଉପରେ ସୂର୍ଯ୍ୟ ଜଳୁଥାଏ ନିଆଁ ରଡ଼ ପରି । ପବନର ବେଗ ଟିକିଏ ଥିର ହେବା ବେଳକୁ ଚାରିଆଡ଼ ଲାଗୁଥାଏ ଖାଲି ନିଶୂନ । ଯିମିତି ଅଧରାତିର ଚିରୁଗୁଣୀଚରା ମଶାଣି ଖାଁ ଖାଁ । ମଝିରେ ଯାହା ଖାଲି ନାଉରିଆର କାତମରା ଶବ୍ଦ ଝପାଡ୍ ଝପାଡ୍ । ନନ୍ଦେ ଆଉ ମିଶ୍ରେ ଏପାଖ ସେପାଖ ବୁଲି ଚାହୁଁଥାଆନ୍ତି । ଏଇ ଶେଷ ପ୍ରଳୟର ମହାସମୁଦ୍ର ଭିତରେ କେଉଁଠି ମଣିଷ ଜୀବନର ସତ୍ତା ରହିଛି, ତାରି ସନ୍ଧାନ କରୁଥାଆନ୍ତି । କେଉଁଠି କେମିତି ଦୂରରେ ଅଧୁଆଣି ବୁଡ଼ା ଗହଳ ତୋଟାସବୁ ଦିଶୁଥାନ୍ତି ଖଇରିଆ ସମୁଦ୍ର ଭିତରେ ଶାଗୁଆ ଟାପୁଟିମାନ ପରି । ଏଠି ଗାଁଗଣ୍ଡା ନାହିଁ ଖାଲି ପାଟ ଭିତରେ ଚାଲୁଛି ନାଆ । ଟିକିଏ ଦୂରକୁ, ଯେଉଁଠି... ଯେଉଁଠି ନଡ଼ିଆ ତାଳଗଛର ଧାଡ଼ିସବୁ ଶଣ୍ଢା ଟେକି ଠିଆ ହେଇଛନ୍ତି, ବଗ ଭଳି ନିରେଖି ଚାହିଁଛନ୍ତି । ଏହି ପ୍ରଳୟ ଭିତରେ କେତେ ଗଲା କେତେ ରହିଲାର ହିସାବ ରଖିବାକୁ ସେଇଠି ସେଇଠି ସବୁ ଗାଁ । ଆଉ ଦିନେ ଏତେବେଳକୁ ଗାଁରୁ ଧୂଆଁ ଉଠୁଥାଆନ୍ତା ଅଙ୍କେଇ ବଙ୍କେଇ କୁଣ୍ଡଳୀ କାଟି । ପଲ୍ଲୀ ଗାଁର ରାନ୍ଧୁଣୀ ଗାଧୁଆ ବେଳ । ଚୁଲିର ନିଆଁ ଲିଭି ଲିଭି ଆସୁଥାନ୍ତା । ରାତି ପାହାନ୍ତାରୁ ଦିହ ମୁଣ୍ଡକୁ

ବେନଜର ହୋଇ ଖଟୁଥିବା ବୋହୂଟି କୋଉଠି ଘରକୋଣରେ ଟିକିଏ ଅଳସ ଭାଙ୍ଗୁଥାନ୍ତା । ଲୁଚେଇ ଲୁଚେଇ ଅଇନା ଦେଖୁଥାନ୍ତା । ବାପଘର ଆସିବା ଦିନଠୁଁ କେତେ ସତେ ଝଡ଼ିଗଲାଣି ସିଏ । ସେଥିରେ ପୁଣି କେତେ ଗୁଲଣା ଶାଶୂ ନଣନ୍ଦଙ୍କର, ଯାଆ ପଡ଼ୋଶୀଙ୍କର । ବସିଛି ଖାଲି ବସିଛି । ବାପ ତ ଅଖିଆ ଅଦିଆ । ଡେର ଲାଗିଲାଣି ଏଠି । ଗଣ୍ଡି ବଢ଼ିଲାଣି କଣ ଖାଲି ନାଁକୁ ? ଅଜାଣତରେ କେବେ ଲୁହ ଗଡୁଥାନ୍ତା । କେବେ ପୁଣି ଲୁଚେଇ ଲୁଚେଇ ନୂଆ ହୋଇ ଦୂର ବିଦେଶରୁ ଆସିଥିବା ଗେରସ୍ତଟିର ସୋହାଗ ମନେ ପଡ଼ନ୍ତା । ଭାଙ୍ଗିଯାଉଛ, ଝଡ଼ିଯାଉଛ । ବାପଘରେ କେତେ ଚିଜ ଖାଉଥିଲ । ଆସିଲାବେଳକୁ ପରୀଟି ମିଡି । ଏଇନେ ଶାଶୂଘରେ ଭୋକ-ଉପାସରେ ଦିନ କଟୁଛି । ଲୁହରେ ଲୁହରେ ରାତି ପାହୁଛି- ନୁହେଁ ? ତା'ପରେ ଚିବୁକ ହଲେଇ ଚୁମାଖିଆ । ଦିହଉଲୁସା ପରଶ ଭିତରେ ନିଦୁଆ ନିଦୁଆ ଆଖିରେ କେତେ ସପନର ଅସରା ପସରା । ପରୀରାଇଜର, ସ୍ୱର୍ଗପୁରର । ଶାଶୂଘରର ସୁଖ-ଦୁଃଖ, ଭାବ-ଅଭାବ । ଏଇମିତି କେତେ କ'ଣ ? ସେଇସବୁକୁ ଧୋଇ ପୋଛି ନିର୍ମୂଳ କରି ଆଜି ସୁଅ ଛୁଟିଛି । ମହାକାଳର ସୁଅ ଜିଭ ଲହ ଲହ କରି ଘଡ଼ିକେ ସବୁ ଯିମିତି ଚାଟି ଦେଉଛି ।

ନାଉରିଆଟା ହାଉଳି ଖାଇଲା- 'ଇଲୋ ମୋ ମାଆଲୋ ! କେତେ ବଡ଼ ସାପଟେ । ଏଇନେ ତ ଦେଇଥାନ୍ତା ଶେଷକରି ।'' ସମସ୍ତେ ଫେରି ଚାହିଁଲେ ତା'ଆଡ଼କୁ ''ଗୋଖର, ଆଜ୍ଞା ଚାରି ହାତ ଲମ୍ବର ଗୋଖର ହଳଦୀ ଗରଗର । ଦିହର କାତି ଖାଲି ମଣି ପରି ଜିକିଜିକି କରୁଛି । କାତ ଭିତରେ କେତେବେଳେ ଗୁଡ଼େଇ ହେଇଛି ନିଘା ନାହିଁ । ଉଠୁଥିଲା ଆସ୍ତେ ଆସ୍ତେ । ଫଣାଟାକୁ ବୁଜି ଦେଇଛି । ଯିମିତି ଭାରି ନିରୀହ । ଓହୋ - ଭଗବାନ୍ ରକ୍ଷା କଲେ ଆଜ୍ଞା ।'' ଦାସେ ଲୁହ ପୋଛି କହିଲେ- ଡରନାରେ ଭାଇ, ଏ ବେଳରେ ସଭିଏଁ ସଭିଙ୍କର । ସାପ, ନେଉଳ, ବାଘ, ମଣିଷ କ'ଣ ଆଉ ଶତ୍ରୁ ହୋଇ ଅଛନ୍ତି ? ସାପଟା ଆସୁଥିଲା ଟିକିଏ ଆଶ୍ରା ପାଇଁ, ଛାଟି ଦେଇ ଭଲ କରିଛ । ଯେତେହେଲେ ଫଣୀ ତ ! ପିଲାଟା ଶୋଇପଡ଼ିଥିଲା ତାଙ୍କ ଛାତିରେ । ନନ୍ଦଙ୍କୁ ବଢ଼େଇଦେଲେ ତା ମା ପାଖରେ ଦବା ପାଇଁ । ଦେହରେ ତା'ର ଉଷୁମ ଫେରି ଆସୁଛି । ମା ଥନକୁ ଟିକିଏ ଚୋଷୁ । କ'ଣ ହେଲା କେଜାଣି ଅଚାନକ ପୁଣି ଅଝର ଝର ହୋଇ ଲୁହ ବୋହିଆସିଲା ଆଖିରୁ । ସିଏ ମୁହଁ ଫେରେଇଲେ ଆଗକୁ । ଆକାଶର ନେଳି ଆଉ ପୃଥିବୀର ଏଇ ଖଇରିଆ ସମୁଦ୍ରକୁ ଏକାକାର କରି ଯିମିତି ଆଉ କେଉଁ ରାଇଜରେ ଭାସି ଉଠିଲା ମୁହଁଟିଏ ଯେଉଁଟି ତିନି ବର୍ଷ ତଳେ ହଜିଯାଇଛି । ଟିକି ମୁହଁଟିଏ, ଅବିକଳ ମା ମୁହଁ । ଜନମ ବେଳେ ସଭିଏଁ କହୁଥିଲେ ମା' ମୁହାଁ ପୁଅ ସୁଖୀ । କେଉଁ ସୁଖର ସିଏ ହେଲା ? ଖଡ଼ି ଛୁଇଁବାର ବର୍ଷଟିଏ ବି ପୂରିନି ଚନ୍ଦ୍ରମା ପରି ମୁହଁଟିରେ ତା'ର ବସନ୍ତ କୁଟେଇ ଦେଇଗଲା ଟୋପି ଟୋପି କରି ଚିତା । ଓଃ ମା'ର ସେ ଯେଉଁ କାନ୍ଦଣା । ହେଲେ ସେତକ ବି ଥାନ୍ତା ! କାଲି ପରି ଲାଗୁଛି । ପିଲାଟା

ପାଇଁ କ'ଣ କଟକରେ ମନ ଲାଗେ ! ମା ପୁଅ ଦିହେଁ ଯିମିତି ଅନେଇ ବସିଥିବେ । ଶନିବାର ଦିନ ଘରେ ଗୋଡ଼ ନ ଦେଉଣୁ ପିଲାଟାର ହସ ବାଜେ କାନରେ । ଯିମିତି ଏକାବେଳକେ ଶହ ଶହ ତାନପୂରା ବାଜିଉଠେ । ଉଦାରା ମୁଦାରା ତାରା, ଧର୍ମ ଅର୍ଥ କାମର ତ୍ରିବେଣୀ ସଙ୍ଗମ । ହା-ରେ ପୁତ୍ର ! ସେ ଦିନ ଜାପାନୀ କୁଣ୍ଢେଇଟିକୁ ଧରି କେତେ ଯେ ତା'ର ଖୁସି ! ଲୁଗା ପିନ୍ଧେଇଦବା, ଫୁଲ ଖୋଷିଦେବା, ଚୁମାଦେବା- ''ବୋଉ, ବୋଉ ନନା ଆଣିଛନ୍ତି । ଝିଅ, ମୋ ଝିଅ ।'' ପାଞ୍ଚ ବର୍ଷର ପିଲାଟି ମନରେ ସେ ଦିନର ବାତ୍ସଲ୍ୟ ଦେଖି ମୋତି ସତେ ଖୁସିରେ ଫାଟି ପଡୁଥିଲା; ଆଉ ଆଖିରେ ଆଖି ମିଳେଇ ଚୁପିଚୁପି କହୁଥିଲା- ''ନିଅ, ନାତୁଣୀଟି ପାଇଁ ଏବେ ବରଟିଏ ଖୋଜ ।'' କାହୁଁ ଆସିଲା ସେ ବସନ୍ତ । କାଳ ପରି ଘୋଟିଗଲା ଦେଶଟାଯାକ । ତା'ପରେ ପିଲାଟାକୁ ଅସ୍ଥିସାର କରି ଆସିଲା ଅତିସାର ! ପିଲାଟା କେତେକେ ସହିବ ? ଲୋକେ କହିଲେ ନାନା କଥା । ପିଲାଟାକୁ ଛାଡ଼ିଦେଇ ଯା' ନାରେ ଗୋପ ! ଦେଖୁଛୁ ଯିମିତି ଦିନକାଳ । ଦ୍ୱିତୀୟ ଗର୍ଭରେ ତୋର ଏ କୁଳନନ୍ଦନ । ଯମ ମୁହଁରୁ ଥରେ ବଞ୍ଚିଛି । ରହିଥାଉ ହେଲେ । ଦୟା, ଭାର୍ଗବୀରେ, ଓଃ ସେ ଯଉଁ ପାଣି ସେଥର । ଏମିତି ବି ପୁଣି ଯୋଗ ହୁଏ ? କେତେଟା ଦିନ ସେ ରହିଛନ୍ତି ଯେ ସିଆଡ଼େ ? ପିଲାଟା ପାଇଁ କ'ଣ ମନ ଲାଗେ ? ମାଗୁଣି ବ୍ରହ୍ମାଙ୍କଠଉଁ କ'ଣ ବା ଆଉ ଅଧିକାଟା କିଏ କରି ପାରିଥା'ନ୍ତା ? ଚାରି ଦିନ ତ ଜମା ବାହାରେ ! କି ଡହଳ ବିକଳ ଲୋକଙ୍କର । କିଏ କ'ଣ ସହିପାରେ ମଣିଷ ଦିହ ବହି ସେସବୁ ? ଯାଉ । ଅସୁମାରି ବାପ ମା ସେଥର ପୁଅକୁ ହରେଇ ମୁଣ୍ଡ ବାଡ଼େଇଛନ୍ତି । ନ ହେଲା ଆଉ ଗୋଟିଏ ବାପ ପୁତ୍ରହରା ହବ ! ହଉ, କ'ଣ ଅଛି ସେଥିରେ ? ଏଇ ନୀଳକଣ୍ଠ ସେଦିନ ବି ଥାଏ । ହରିହର, ବ୍ରହ୍ମା, ବାସୁ କରେ; ଆଉ ରାମଚନ୍ଦ୍ରବାବୁ ଥା'ନ୍ତି । ଏତେ ଲୋକଙ୍କ ଆଗରେ ଝରଝର ହୋଇ କାନ୍ଦିବା, ପୁଣି ପୁଅ ପାଇଁ ! କୁଆଡ଼େ ଗଲା ସେ ଟାଣ ? କ'ଣ ଯିମିତି ହୋଇଗଲା । ରକ୍ତମାଂସର ସମ୍ପର୍କ ସତେ କେଡ଼େ ଟାଣ ? ସନ୍ତାନର ମାୟା, ପିତୃତ୍ୱର ତାଡ଼ନା ଯିଏ ନ ବୁଝେ ସିଏ କ'ଣ ମଣିଷ ? ଅସୁର । ମଣିଷ ଦିହରେ ଅସୁର ସିଏ । ପୁଅ ମୁହଁରେ ନିଆଁ ଦବା କୋଉ ବାପ ସହିବ ? ଦାସେଙ୍କ ଆଖି ଆଗରେ ବାହାରଟା ଜାଲଜାଲୁଆ ହୋଇଯାଇଥିଲା କେତେବେଳୁ । ସେ ମୁହଁ ପୋଛିଲେ । ଠେକାଟିକୁ ଭଲ ଭାବରେ ବାନ୍ଧି ଦେଇ ପୁଣି ଚାହିଁଲେ ଆଗକୁ । ପାଣିରେ ଯିମିତି ଶେଷ ନାହିଁ । ମାଡ଼ି ଆସୁଛି ଆହୁରି ଆହୁରି ଆଗକୁ ଆଗକୁ । ସେଇ ପାଣି ଭିତରେ ତାଙ୍କୁ ଜଣାଗଲା, ଅସୁମାରି ମୋତି କଙ୍କାଳସାର ପୁଅଟିମାନ ଧରି ଭାସି ଯାଉଛନ୍ତି । କେବେ ବୁଡୁଛନ୍ତି । କେବେ ଉଠୁଛନ୍ତି । ହାବୁଡୁବୁ ଖାଉଛନ୍ତି । ବାଁ ହାତରେ ପୁଅକୁ ଧରି ଡାହାଣ ହାତ ଉପରକୁ ଟେକୁଛନ୍ତି । ଚିତ୍କାର ଶୁଭୁଛି ଅସଂଖ୍ୟ କଣ୍ଠର - ''ରଖ, ରଖ, ଆମକୁ ରଖ, ଆମକୁ ବଞ୍ଚାଅ ।'' ଦାସେ ବିଚଳିତ ହୋଇ ପଡ଼ିଲେ - ''ହେ ନାଉରିଆ, ଏଠି ଗାଁ କୋଉଠି ନାହିଁ ?

ଆରେ ଗାଁକୁ ଲଗାଅ, ଦେଖିବା ଭାଇମାନେ କିମିତି ଅଛନ୍ତି । ମା'ମାନେ କିମିତି ଅଛନ୍ତି । ଖାଲି ପାଟେ ପାଟେ କ'ଣ ନାଆ ବାହୁଛ ମ ? ଆମେ କ'ଣ ନାଆକେଳି କରୁଛେଁ ?'' ''ଆଜ୍ଞା, ଏଇତ କୃଷ୍ଣନଗରରେ ଆମେ ଆସି ପହଞ୍ଚିଛେ । କେଡ଼େ ବଡ଼ ଗାଆଁ ଆଜ୍ଞା ! ବାଁ ପାଖକୁ ଟିକିଏ ଚାହାଁନ୍ତୁ । ସବୁ ନିଶୂନ ।'' ବାଁ ପାଖରେ ଟିକିଏ ଦୂରକୁ ଛାଡ଼ି ଦେଖାଯାଉଥିଲା ଯେଉଁ ଶାଗୁଆ ଟାପୁ, ପାଖେଇ ଆସୁଛି । ଚାରିପାଖର ଆମ୍ବ, ପୁନାଙ୍ଗ ଆଉ ପଣସଗଛର ଘେର ବାରିହୋଇ ଆସୁଛି । ମଝିରେ ମଝିରେ ଉହୁଙ୍କି ଉଠିଥିବା ପୁଣ୍ଡିଆ ଆଉ ଅର୍ଜୁନ ଗଛ ସାଙ୍ଗକୁ ଛାତି ପତେଇ ଥିରି ଥିରି ବାହୁଙ୍ଗା ହଲେଇ ଦୋହଲୁଛି ଅସୁମାରି ନଡ଼ିଆ ଗଛ । ଶାଗୁଆ ବାହୁଙ୍ଗାରେ ଚିକ୍‌ଚିକ୍ କରୁଛି ଭୋଦୁଆଖରା । ଟିକିଏ ଛାଡ଼ି ଖବିସ ପରି ଧାଡ଼ି ଧାଡ଼ି ତାଳଗଛ ଉପରେ ପଲ ପଲ ଶାଗୁଣା ଉଡୁଛନ୍ତି ବସୁଛନ୍ତି । ଗାଁଟା ଉପରେ ମାଳ ମାଳ ଚିଲ ଚକ୍‌କର କାଟୁଛନ୍ତି । ନାଆ ପଶିଲା ଗାଁ ମୁହଁରେ । ଦାସେ ଅଥୟ ହୋଇ ପାଟି କଲେ । ଯେତେ ଦୂରକୁ ଶୁଭିବ ତେଡ଼େ ପାଟିରେ । ''କିଏ ଅଛ ଲୋ ମା'ମାନେ ! ବାପମାନେ ! ଡର ନାହିଁ ଡର ନାହିଁ । ମଣିଷ ଆସିଲେଣି । ସାହସ ଧର । ଥୟ ଧର । ସବୁ ଠିକ୍ ହୋଇଯିବ ।'' ଗାଁ ଦାଣ୍ଡ ଦି'ପଟର ଛଟାବାଡ଼ିଆ ମାଟିକାନ୍ଥସବୁ ଭୁଶୁଡ଼ି ପଡ଼ିଛି । ତା' ଉପରେ ପଞ୍ଜରା କାଠି କେଇଖଣ୍ଡ ଦେଖେଇ ନଡ଼ାଉଲୁରା ମଥାନସବୁ କଉଠି କଡ଼େଇ ପଡ଼ିଛି ତ କଉଠି ହାମୁଡ଼େଇ ପଡ଼ିଛି । ଭିତରେ ନାକଫଟା ଗନ୍ଧ । ପଚା ପତର, କୁଟା ଆଉ ସଢ଼ା ଜୀବଜନ୍ତୁ ଦିହରୁ । ଦାସେ ପାଟି କଲେ, ''ଆସ୍ତେରେ ନାଉରିଆ ! ଥିରି ଥିରି ଯିବା । ନନ୍ଦେ, ନିଘା କର, ନିଘା କର । ଏଇ କୁଢ଼ କୁଢ଼ ସ୍ତୂପଦିହରେ କଉଁଠି କିମିତି ମଣିଷ ଜୀବନ ରହିଯାଇଛି ନିଘା କର ।'' ନୀଳକଣ୍ଠ ସହସା ଚିତ୍କାର କରି ଉଠିଲେ - ''ଆଜ୍ଞା ଆପଣେ, ମିଶ୍ରେ, ଦେଖନ୍ତୁ ଦେଖନ୍ତୁ । ହେ ଭଗବାନ୍ ! ମଣିଷ ଜୀବନ ପୁଣି ଏମିତି ଯାଏ !'' ସମସ୍ତେ ଫେରି ଚାହିଁଲେ । ପାଖ ଗୋଟାଏ ଗୁହାଳଘର କାନ୍ଥ ଭିତରୁ ଅଧାରୁ ବେଶି ବାହାରି ଆସିଛି ବଳଦଟାଏ । ତା' ଉପରେ ମଣିଷଟାଏ ଛାତିରୁ ମୁଣ୍ଡ ପର୍ଯ୍ୟନ୍ତ । ଦି'ଟାଯାକ ଫୁଲି ଢୋଲ ହୋଇ ଯାଇଛନ୍ତି । ନାଉରିଆ ପାଟି କଲା - ''ଆହା ବିଚରା ! ଗୁହାଳକୁ ଆସିଥିଲା ଗୋରୁ ଫିଟେଇଦବ ବୋଲି । କାନ୍ଥ ପଡ଼ିଯାଇଛି ।'' ତା' ସେ ପାଖକୁ ଛତରା ମଥାନଟା ଅଟକିଯାଇଛି ନଇଁଯାଇଥିବା କୁଣ୍ଡେମୋଟର ଶାଳ ଖୁଣ୍ଟ ଉପରେ । ପାଖ ଟୁବରୁ କେଉଁଠୁ ଭାସିଆସିଛି ବିଲାତୀ ଦଳ ଆଉ ବୋରଝାଞ୍ଜି । ମେଞ୍ଚାକୁ ମେଞ୍ଚା ଘେରି ଯାଇଛନ୍ତି ଭଙ୍ଗାକାନ୍ଥର ଚାରିପାଖେ । କାନ୍ଥ ତ ନୁହେଁ । ଛଟାବାଡ଼ରୁ ମାଟି ଧୋଇଯାଇ ଦିଶୁଛନ୍ତି ପିଞ୍ଜରାଟି ପରି । ବନ୍ଦ ଘର ଭିତରେ ଭାସୁଛି ଦୁଇଟା ଶବ । ମିଣିପଟିଏ, ମାଇପିଟିଏ । ଛନ୍ଦାଛନ୍ଦି ହୋଇ ଭାସୁଛନ୍ତି ବାଡ଼କୁ ଆଉଜି । ହାବୁକା ହାବୁକା ଲହଡ଼ି ଉପରେ ଉଠୁଛନ୍ତି, ପଡୁଛନ୍ତି । ଦାସେ ଆଖି ପୋଛିଲେ । କେତେ ଆଶା କରି ହୁଏତ କେଉଁ ଦୂର କାଳିମାଟି କି ରେଙ୍ଗୁନ୍‌ରୁ ଧାଇଁଆସିଥିଲା ଚିର ପରବାସୀ

ଏଇ ମଣିଷଟି, ଆଉ କେତେ ଆଶାର ପ୍ରଦୀପ ଜାଳି ଚାହିଁଥିଲା ତା'ର ପ୍ରିୟତମା । ଶେଷରେ ମଧୁ ଯାମିନୀର ନିବିଡ଼ ଆଶ୍ଳେଷ ଭିତରେ ଦୁଇଟି ହୃଦୟକୁ ଚିରଦିନ ଏଇମିତି ଏକାକାର କରିଦେଇଛି ଏଇ ବନ୍ୟା । ଅସହ୍ୟ ଭାବରେ ପୁଣି ଦାସେ ଚିତ୍କାର କରି ଉଠିଲେ - ''ଆରେ ଜୀବନ ଖୋଜ ! ଜୀବନ । ମଶାଣି ଭିତରେ କି କାମ ଆମର ? ଚାଲ, ଆଗକୁ ଚାଲ । ଦେଖ କିଏ ବଞ୍ଚିଛି । କିଏ ଚାହିଁବସିଛି ଆମକୁ ।'' ପୁଣି ନାଆ ଚାଲିଲା ଆଗକୁ । ଦି' ପାଖର ସାରି ସାରି ଘର ଭୁଶୁଡ଼ି ପଡ଼ିଛି ଚିତ୍ ହୋଇ । ଖାଁ-ଖାଁ । ନିଶୂନ । ଆଉ ଟିକିଏ ଆଗକୁ ଜଣାଗଲା ଯିମିତି କେଉଁ ଗୋଟାଏ ଝଙ୍କାଳିଆ ବରଗଛରେ ଅନେକ ପକ୍ଷୀ ବସା ବାନ୍ଧିଛନ୍ତି । ବହୁ କଣ୍ଠର କ୍ଷୀଣ କାକଳି । ଦାସେ କହିଲେ, ''ନୀଳକଣ୍ଠ, ଶୁଣୁଛ ! ମଣିଷ କଣ୍ଠ ପରି ଲାଗୁଛି ତ ! ଏଇଠି ପାଖରେ ନିଶ୍ଚୟ । କେଉଁଠି ଯେମିତି ଗାଁଟାଯାକର ମଣିଷ ଠୁଳ ହୋଇଛନ୍ତି ।'' ନାଉରିଆ କହିଲା, ''ଆଜ୍ଞା ନାଆ ଆଉ ଭିତରକୁ ଯିବନି ! ଅଣଓସାରିଆ ରାସ୍ତା । ତହିଁକୁ ପୁଣି ନାଆ ତଳି ଛୁଇଁଛି ।'' ଦାସେ କହିଲେ, ''କିଛି କଥା ନାହିଁ । ତୁମେ ଏଇଠି ବସିଥା । ଏବେ ଖାଲି ଚୁଡ଼ା ଆଉ ଗୁଡ଼ ଗଣ୍ଠିଲି ବାନ୍ଧି ଆମେ ଓହ୍ଲେଇ ଯାଉଛୁଁ । ନୀଳକଣ୍ଠ, ନନ୍ଦେ, ଆଉ ଡେରି କରନ୍ତୁ ନାହିଁ ।'' ଆଗେ ସିଏ ତଳକୁ ଓହ୍ଲେଇଗଲେ । ତଳେ ଅଣ୍ଟେ ପାଣି । କହିଲେ, ''ଧୀରେ ଓହ୍ଲାଅ ନୀଳକଣ୍ଠ, ତଳେ ପଙ୍କ । କାଚ ବି ଥାଇପାରେ । କାଠି କୁଟା ଭର୍ତ୍ତି ।'' ଅନନ୍ତ ମିଶ୍ର ଖାଲି ଚୁଡ଼ାର ବଡ଼ ବଡ଼ ଯାଉଁଳିଟିମାନ କରି ଉପରୁ ବଢ଼େଇଦେଲେ । ଦି' କାନ୍ଧରେ ଦୁଇ ଦୁଇଟା ଥଳି ଥୋଇ ଚାଲିଲେ ତିନି ଜଣ । ଦାସେ ଚାଲୁଥାନ୍ତି ବାଟ ଦେଖେଇ । ପଛରେ ମିଶ୍ରେ ଗୁଡ଼ହାଣ୍ଡିଟିଏ ମୁଣ୍ଡେଇ । ସମସ୍ତଙ୍କ ହାତରେ ବାଡ଼ି । ନାଉରିଆ ଚାହିଁଲା । ପଙ୍କୁଆ ପଚପଚ ରାସ୍ତା । ଛାତିଏ - ଅଣ୍ଟେ ପାଣି । ସହରିଆ ଧୋବଧାଉଳିଆ ବାବୁଙ୍କର ପାଦ କେବେ ଆଉ ପଡ଼ିଛି ଏ ବାଟରେ ? ଏମିତି ଅବେଳରେ । କେଉଁ ଅବାଟ, ଅପନ୍ତରାରେ ଭାଇଭଉଣୀ ପୁଅଝିଅକୁ ଛାଡ଼ିଦେଇ ଆସିଥିବା ବାପ କି ଭାଇ କିଏ ଏତେ ଆକୁଳ ହୁଏ ? କଉଁ ମଣିଷ ମଣିଷକୁ ଏମିତି ଚିହ୍ନେ ? କେତେ କେତେ ଭରା ନଈର ପେଟ ଭିତରେ ତଳମାଳିଆ ଗାଁସବୁ ପଚି ହଜିଯାଇଛି । ଯଉଁ ମଣିଷ ରଇତ ହୋଇ ଜମି ଚଷିଛି, ସେଇ ପୁଣି କଉ ପାଟରେ ପଚି ସଢ଼ି ଖତ ହୋଇଯାଇଛି । କୁଢ଼ କୁଢ଼ ସୁନାରୁପା ବି କଉଁଠି ପୋତି ହୋଇ ଗୋବର ହୋଇଯାଇଛି । କିଏ ରଖିଛି ତା'ର ହିସାବ ? ବୈଶାଖ ମାସର ଝାଞ୍ଜିପିଟା ଦ୍ୱି'ପ୍ରହରେ ତରଭୁଜ କି ପୋଟଳ ପାଳରେ ଯଉଁ ବାପବୁଢ଼ା ଜଗିରହି କୁହାଟ ଛାଡ଼ିଛି । ରାତିଅଧକୁ ଜନ୍ତାଳ ବରଗଛ ମୂଳେ ପିତାସୁଣୀର ଆଲୁଅ ଦେଖି ଯଉଁ କୁନି ନାତିଟି ଜେଜେ କୋଳରେ ମୁଣ୍ଡ ଗୁଞ୍ଜିଛି । ଫଗୁଣମାସିଆ ରାତିପାହାନ୍ତାକୁ ଶୀତୁଆ ବାଆ ଭିତରେ ବାଣ ଫୁଟେଇ ଯଉଁ ମରଦଟି ବାହା ହେଇଛି କଉଁ ଦୂର ଗାଁର ନହନହକୀ ଗହମଗୋରୀ, ପୁଷମାସର କୋହଲିଆ ଉତ୍ତରାହାଓ୍ୱା ଭିତରେ ସୋରିଷଫୁଲିଆ ନଈତୁଠରେ ଯିଏ ଦିହ

ମାଜେ, ଆଉ କୂଳକୁ ଉଠି ନଇମଙ୍ଗଳାଙ୍କ ପାଖେ ମୁଣ୍ଡିଆ ମାରିବାବେଳେ ଗାଁର କଉଁ ନହୁଲୀ ଭାଉଜ ଯାହାକୁ ଟାପରା କରନ୍ତି - ''ପୁଷ ପୂରି ମାଘ ହଉ, ମୋ ଗୋରୀ ମଥାରେ ସିନ୍ଦୂର ନାଉ'' - କୁଆଡ଼େ ଯା'ନ୍ତି ସେଇ ବାପ-ପୁଅ, ଅଜା-ନାତି, ଗିରସ୍ତ-ଭାର୍ଯ୍ୟା ଆଉ ନଣନ୍ଦ-ଭାଉଜ ? କୁଆଡ଼େ ଯାଏ ସେଇସବୁ ଟାହିଟାପରା ଆଉ ସେନେହ ସୋହାଗର ଅସରନ୍ତି ପେଟରା ? କିଏ ବା ଆସେ କଉଁ ମୁଲକରୁ ସେସବୁକୁ ଖୋଜି ଲୋଡ଼ି ? ବରଷ ବରଷ ବିତିଯାଏ । କଉଁ ମରୁଭୂମିରେ ଦୂବ କଅଁଳିବା ପରି ଏଇ ରାଇଜରେ କଉଁଠି କିମିତି ମଣିଷ ପୁଣି ଗଜା ମାରେ । ସେତିକିବେଳେ ଚାଲେ ପୁଣି ଖୋଜାଲୋଡ଼ା ସଂଖୁଳା ପଖଳା । ଯାନିଯାତ ଆଉ ମେଳା ମଉଛବ । ଏଇମିତି ଏଇ ପ୍ରଳୟ ଭିତରେ କଉଁ ବାପ ଅଜା କି ଭାଇ ଭଉଣୀ କାହାର ଆସିଛି କେବେ ଖୋଜି ଲୋଡ଼ି ? ଅଣ୍ଟା ଭିଡ଼ି ଟାଣିଦେଇଛି ନେଞ୍ଚାରା କୋତରା । ମସିଆ ଦିହକୁ ଛାତିରେ ଚାପି ଧରି କାନ୍ଦିଛି ତୁହାକୁ ତୁହା ? ପାଟିରେ ଦେଇଛି ତା'ର ଅଧାର ? ନିଜକୁ ତୁଛ କରି ? ନାଉରିଆ ଚାହିଁଛି ଚାରିଜଣଯାକ କାହୁଅ ପଙ୍କଙ୍କୁ ମାଡ଼ିଚକଟି ଆଗମୋଡ଼ ଭିତରେ ଲୁଚିଯିବା ଯାଏ । ମୋଡ଼ ସେପଟରେ ଡାହାଣକଡ଼କୁ ଏକତାଲା କୋଠାଟିଏ । ତା'ରି ଛାତ ଉପରେ ମଣିଷ କିଜାଣି ଚାଳିଶ କି ପଚାଶ । ଖୁନ୍ଦାଖୁନ୍ଦି । ଏ ଚାରିଜଣଙ୍କୁ ଦେଖି ଏକ ସଙ୍ଗେ ପାଟି କରି ଉଠିଲେ । ହୈ ହୁଲ୍ଲୋଳରେ ଚଉଦିଗ ଯିମିତି ଉଠିଲା ପଡ଼ିଲା । ''ଏଇଠି । ଏଇଠି ବାବୁ ଚାରିଦିନ ହେଲା ପଡ଼ିଛୁ । ପେଟରେ ଦାନା ନାହିଁ । ଦିଅ, ଆମ ପେଇଁ କ'ଣ ଆଣିଛ । ଦିଅ, ଆମକୁ ବଞ୍ଚାଅ । ବାପାମାନେ ।'' ଦାସେ ହାତ ହଲେଇ ଥୟ ହେବାକୁ କହିଲେ, ଶୁଣୁଛି କିଏ ? ଉପରେ ଯଉଁ ମୂର୍ତ୍ତିଗୁଡ଼ିକ ଦି'ହାତ ମେଲେଇ ପଞ୍ଜରାକାଠି ଚାରିଖଣ୍ଡ ଦେଖେଇ ଏପଟ ସେପଟ ଦଉଡ଼ି ହଉଥା'ନ୍ତି ସେଗୁଡ଼ିକ କଉଁ ପୁରାଣ ଯୁଗର ଯୁଦ୍ଧଭୂଇଁରେ ଡାକୁଣା ଡାକୁଣୀ କି ପ୍ରେତ ପ୍ରେତିନୀ ପରି । ମଣିଷଖିଆ କବନ୍ଧ ପରି ନାଚୁଛନ୍ତି । ଗହୀର ପେଟ ଭିତରକୁ ତାଙ୍କର ଜଗତଟାକୁ କ୍ଷେପି ନେବାକୁ କହୁଛନ୍ତି । ଚାରିଜଣଯାକ ଘର ଭିତରକୁ ପଶିଲେ । ଘରେ ଆଣ୍ଠୁଆଣି ପାଣି । ପଟୁଲଗା ଚଟାଣ ଖସଡ଼ା । ତିନି ଖଞ୍ଜା । ଘରେ ପାଣି ଉଠିଥିଲା ମଣିଷେ ଉଚ୍ଚରେ । ବାର କି ଚଉଦ ହାତର ଅମାର ଭିତରେ ପଶିଛି ପାଣି । ପଚାସଢ଼ା ଗନ୍ଧରେ ନାକ ଫାଟିପଡ଼ୁଛି । ଓକାଳ ଉଠୁଛି । କନା କୋତରା ଏଠିସେଠି ଗୋଡ଼ରେ ଲାଗୁଛି । ପାଣିରେ ଜୁବୁବୁବୁ ହୋଇ ଖୋଜୁ ଖୋଜୁ ଦାସେ ପାଇଲେ ଉପରକୁ ଯିବା ଲାଗି ଶିଡ଼ି । ସେକାଳର ଅଣଓସାରିଆ ଶିଡ଼ି । ପୁଣି ମଫସଲ ଗାଁର । ଜଣେ ଉଠିବ କି ଜଣେ ଖସିବ । ହାତଭରା ଦେଇ ଚାରିହେଁ ଉଠିଲେ ଉପରକୁ । ଉପରେ ଶାଗୁଣା ପଲ ଭିତରେ ଚୁଡ଼ାତକ ବାଣ୍ଟୁ ବାଣ୍ଟୁ ତାଙ୍କୁ ଲାଗିଲା ତାଙ୍କ ଦିହରୁ ହାଡ଼ ମାଉଁସ ବି ପଲପଲ କରି ଟାଣିଓଟାରି କାଢ଼ିନେବେ ସେମାନେ । ଗୋଟିଏ କଣକୁ ଗୁମାନ ହୋଇ ବସିଥିଲା ଯଉଁ ଲୋକଟି ଦୁଇ ଆଣ୍ଠୁ-ସନ୍ଧିରେ ମୁହଁ ପୂରେଇ, ଦାସେ ଯାଇ ତାକୁ

ହଲେଇଲେ ଲୋକଟାର ମୁହଁ ଉଠେଇ । ଦାସେଙ୍କ ବୟସର ଯୁବକ । ଆଖିସବୁ ଭିତରକୁ ପଶିଯାଇଛି । ବୟସ ଯିମିତି ବଢ଼ିଯାଇଛି ତିନି ଗୁଣ । ଅଖିଆ ଅପିଆ ! ରାତି ଅନିଦ୍ରା ସାଙ୍ଗକୁ ଆଖିରେ ତା'ର ବୋଝ ବୋଝ ଚିନ୍ତା ଆଉ ଅବସୋସ । ଦାସେ ଡାକିଲେ । ସରାଗଭରା କଣ୍ଠ ''ବାପା ଉଠ । ଭାବି କ'ଣ ପାଇବ ? ଠାକୁରେ ଚାହିଁଲେ କାଲି ପରି ସବୁ ମିଳିଯିବ । ତା'ଠୁ ବେଶି । ତା'ଠୁ ବେଶି । ନେ, ଚୁଡ଼ା ନେ । ବଢ଼ି ପାଣି ଖସୁଛି । ଖସିଯିବ ଆହୁରି । ଆମ ପଛକୁ ଆହୁରି ଲୋକ ଆସୁଛନ୍ତି । ଆସିବେ । ଲୁଗା, ଚାଉଳ ସବୁ ପାଇବ ତୁମେ ।'' ଲୋକଟା କିନ୍ତୁ ଅଥୟ ହୋଇ କାନ୍ଦୁଥିଲା । କୋହ ତା'ର ବଢ଼ିଗଲା ଚାରିଗୁଣ ଦାସେଙ୍କ କଥାରେ । ଚୁଡ଼ା ଆଉ ଗୁଡ଼କୁ ରଙ୍କୁଣିଆ ହୋଇ ଚୋବାଉ ଚୋବାଉ କିଏ ଗୋଟାଏ କହିଲା, ''ସିଏ ନେବେନି ବାବୁ ! ଜାତିରେ ବ୍ରାହ୍ମଣ ସିଏ । ଏ ଘର ତାଙ୍କରି । ରାତି ପାହିଲେ ପଚାଶ ଲୋକର ଖନ୍ଦା ବସୁଥିଲା । ମରିଗଲେ ବି କ'ଣ ସିଏ ଛତରରେ ଖାଇବେ ?'' ଲୋକଟାର କାନ୍ଦଣା ଆହୁରି ବଢ଼ିଗଲା । ଦାସେ ତାକୁ ଛାତିରେ ଜାକିଧରି ଆଉଁଶିଲେ । ''ଥୟ ଧର ଭାଇ । ମଣିଷ ଜୀବନ ତ ଏଇମିତି । ଦ୍ୱାରିକା ଆଉ ଅଯୋଧ୍ୟାପୁରୀ ତ ପୁଣି କୁଆଡ଼େ ହଜିଗଲା ଏଇ ଭୂଇଁରେ ? ସବୁ ଚାଲିଯିବ । ରହିବ ଖାଲି ଧର୍ମ-ମଣିଷପଣିଆ । କାଳ ଉପରେ ଅଭିମାନ ମାରି ଜୀବନଟାକୁ ନଷ୍ଟ କରିବା କ'ଣ ଉଚିତ ହବ ତୁମ ଭଳି ଯୁବକ ପକ୍ଷରେ ? ଆମେ ସଭିଏଁ ବ୍ରାହ୍ମଣ ଭାଇ । ଆମ ହାତରୁ ଖାଇଲେ ତୁମ ଜାତି ଯିବନି । ନିଅ । ବୁଝ । ଅଥୟ ହୁଅନା ।'' ଆଉ ଜଣେ କିଏ କହିଲା ସୁକୁ ସୁକୁ ହୋଇ - ''କୃଷ୍ଣନଗର ମୌଜାରେ ଯାଙ୍କଠଉଁ ବଳି ହୋଇ କିଏ ଆଉ ଥିଲା ? ପରୀଟି ଭଳି ଭାରିଯା । ପାଞ୍ଚବରଷର କାର୍ତ୍ତିକ ପରି ପୁଅ । ବୁଢ଼ାବାପା, କକେଇ, ବୁଢ଼ୀମା ଆଉ ଖୁଡ଼େଇ କୁଆଡ଼େ କିଏ ଗଲେ । ରାତି ଅଧରେ ପାଣି ପଶିଲା ମଣିଷେ ଉଞ୍ଚରେ । ବଞ୍ଚିଗଲୁ ଆମେ କେଇଜଣ ଚାକର ମୂଳିଆ । ବାବୁ ପହଁରୁ ପହଁରୁ ଶିକୁଳି ଖୋଲିଲେ । ଅମେଇସିଆ ଅନ୍ଧାର ରାତି ପାହିବା ବେଳକୁ କିଏ କେଉଁଠି ତଳି ଲାଗିଗଲାଣି । ଏଇ ପୋଡ଼ା ଜୀବନ କେଇଟାକୁ ନେଇ ଆଉ କ'ଣ କରିବୁ ?''

ସର୍ବହରା ଏଇ ଅଭିଜାତ ସନ୍ତାନଟିକୁ କ'ଣ ଦେଇ ବୋଧ କରିବେ ଦାସେ ଭାବିପାରୁ ନ ଥିଲେ । ଖାଲି ଯାହା ଆଖିର ଲୁହରେ ତା'ର ଧୋଇ ଦେଇ ଗଲେ ଛାତିର ବେଦନା । ଏ ଜାତିର ଅଭିମାନ ମୃତ୍ୟୁଞ୍ଜୟ । ଦାସେ ଫେରିଆସିଲେ ଅସ୍ଥିର ହୃଦୟ ନେଇ । ବଢ଼ି ସାଙ୍ଗକୁ ମାଡ଼ିଆସୁଛି କରାଳ ମହାମାରୀ । କିଏ ବଞ୍ଚେଇବ ଯାଙ୍କୁ ସବୁ ତା' ମୁହଁରୁ ? କେଉଁ ଦିନ ବା ଲାଗିବ ଏଇ ପିଞ୍ଜରା କାଠି ଦିହରେ ମାଉଁସ କେଇ ପଳ ? ବର୍ଷେ ଅଧେ ନୁହେଁ । ଥରକୁ ଥର ଆସୁଛି ଏଇ ବିଭୀଷିକା । ଲହ ଲହ ଜିଭ କାଢ଼ି ପାହାଡ଼ ଦିହରେ ଦାନ୍ତ ପଜେଇ, ଝଡ଼ ଦେହରେ ଲୁଗା ଉଡ଼େଇ

ଦିଗମ୍ବରୀ ସାଜି ଆସୁଛି ଏଇ ବନ୍ୟା । ଚୁଡ଼ା ଚାଉଳରେ କ'ଣ କେହି ତାକୁ ରୋକେ ? ପ୍ରତିକାର ଲୋଡ଼ା - ସବୁ ଦିନର ସବୁ କାଳର ।

ନାଆ ଚାଲୁଥିଲା ଏଥର କୃଷ୍ଣନଗର ଗାଁକୁ ପଛରେ ଛାଡ଼ି ଉତ୍ତରମୁହାଁ ହୋଇ । ଦାସେ କହିଲେ, ''ନୀଳକଣ୍ଠ ସବୁ ତ ଦେଖିଲ, ମନେରଖ । ଭାବିରଖ କ'ଣ ଯା'ର ପ୍ରତିକାର । କଟକରେ ଶୁଣିଛି ନେଭିନସନ ସାହେବ ଆସୁଛି ବିଲାତରୁ - ସାମ୍ବାଦିକ । କଟକ ମିଟିଂରେ ଅବିକଳ ସବୁ ବର୍ଣ୍ଣନା କରିବ ତମେ । ସ୍ଲୋଗାନ ଦବ ସ୍ଥାୟୀ ପ୍ରତିକାର ପାଇଁ । ବରଷ ବରଷ ଧରି ଶାସନକଳରେ ପେଷି ଦେଶଟାକୁ ଆମର ଦୋରୁଅ କଡ଼ା ଆଖୁଛେଦା କରିସାରିଲାଣି । ଦେଖୁଛି କିଏ ଯେସବୁ ? ଆମେ ପ୍ରତିକାର ଚାହୁଁ । ଅଲବତ୍ ଚାହୁଁ । ଯେତେ ଶୀଘ୍ର ପାର ସେତେ ଶୀଘ୍ର ଗରିବୀ ହଟାଓ, ହଟାଓ ବନ୍ୟା, ହଟାଓ ମହାମାରୀ, ଜୁଲମ ହଟାଓ, ଶୋଷଣ ହଟାଓ, ହଟାଓ ମନାର୍କୀ । ଆମେ ଚାହୁଁ ଗଣତନ୍ତ୍ର । ସ୍ୱରାଜ । ଥ୍ରି ଚିୟର୍ସ ଫର ଡେମୋକ୍ରେସି... ଥ୍ରି ଚିୟର୍ସ ଫର ଡେମୋକ୍ରେସି... ।'' ଦାସେ ଉତ୍ତେଜନାରେ ଥରୁଥିଲେ । ଆଖିରୁ ତାଙ୍କର ଲୁହ ଝରି ପଡୁଥିଲା । ହଠାତ୍ କଇଁ କଇଁ ହୋଇ କାନ୍ଦିଉଠିଲେ । ଓଦା ପିନ୍ଧାଟାକୁ ଆଖିରେ ଦେଇ ମୁହଁ ଲୁଚେଇଲେ । କେବେ ଦିନେ ରାତିରେ ମୋତି କହିଥିଲା ଚୁପି ଚୁପି ''ଶୁଣୁଛ । ତୁମକୁ ଲୋକେ କହୁଛନ୍ତି ପାଗଳ । ନିଜ ଘର କଥା ଛାଡ଼ି ନିଜ ଦିହ ମୁଣ୍ଡକୁ ନ ଚାହିଁ ଯୁଗକୁ ନ ଚାହିଁ ଯିଏ ସବୁବେଳେ ଭାବେ ଅନ୍ୟ କଥା, ଭାବୁ ଭାବୁ କାନ୍ଦେ କ'ଣ ତାକୁ କହନ୍ତେ ଲୋକେ ?'' ସେ ପଚାରିଲେ ଚିବୁକଟି ଧରି ''ତୁମେ କ'ଣ କହ ?'' ମୋତି ନିରବ । ଗାଲରେ ଗାଲ ଥାପି କହିଲେ, ''ମୋତି, ତୁମର ସବୁଠୁ ଗୋଟାଏ ଖରାପ ଗୁଣ- ତୁମେ ଖୁବ୍ ସରଳ । ଲୋକଙ୍କ କଥାରେ ବିଶ୍ୱାସ କର । ଲୋକେ ତ କହିବେ ନାନା କଥା । ସେସବୁ ଶୁଣି କ'ଣ କିଛି କରିହୁଏ ? ପାଗଳାର ହାତ ଧରିଛ ଯେତେବେଳେ ତୁମେ ବି ତ ପାଗଳୀ । ଏଣିକି କହିବ ସେଇଆ- ସିଏ ପାଗଳ ହେଲେ ମୁଁ ଆଉ କଉଁ କମ୍ କି ? ମୁଁ ବି ତ ପାଗଳୀ । ଲୋକଙ୍କ କଥା ଲୋକଙ୍କ ପାଖରେ ରହିବ । ପାଗଳୀ, ମଣିଷ ଜୀବନଟା କ'ଣ ଖାଲି ନିଜ ପେଇଁ ? ନିଜେ ଗଣ୍ଡେ ଖାଇପିଇ ସୁଖରେ ରହିଲେ ମଣିଷ କ'ଣ ମଣିଷ ହୁଏ । ପଶୁ ବି ତ ସେୟା କରେ । କହିଲ ଦେଖି ତୁମର ଅତି ଆଦରର ପୁଷିଟି କ'ଣ କରେ ? ଯା ଛଡ଼ା ତାର କ'ଣ ଆଉ କିଛି ଅଛି ? ନିଜ ସୁଖଦୁଃଖରେ ବୁଡ଼ି ରହି ଶହେ ବର୍ଷ ବଞ୍ଚିଲେ ବି ଏ ଜୀବନ ମୂଲ୍ୟହୀନ । ପର ପାଇଁ ଦେଶ ପାଇଁ କାମ କରି ଦିନଟିଏ କି ଘଡ଼ିଟିଏ ବଞ୍ଚିଲେ ବି ସେ ଜୀବନର ମୂଲ୍ୟ, ଅକଳନ । ପାଗଳୀ, ଖାଲି ମଣିଷ ଦିହ ନେଲେ କ'ଣ ଲୋକ ମଣିଷ ହୁଏ ?'' ମୋତି ସେଇମିତି ନୀରବ । ନିଝୁମ ରାତିର ଅସାଡ଼ ଅନ୍ଧକାର ଭିତରେ ମୁହଁଟିକୁ ତାଙ୍କର ତୋଳି ନେଇ ଦାସେ ଜାଣିଲେ ମୋତି କାନ୍ଦୁଛି । କହିଲେ, ''ପାଗଳୀ କାନ୍ଦ । ଖୁବ୍ କାନ୍ଦ । ଏଇ କାନ୍ଦିବା ଭିତରେ ଯେ କି ଆନନ୍ଦ ।'' ତା'ପରେ ଦୁହିଁଙ୍କ ଆଖିର ଲୁହର ଝରଣାରେ ଧୋଇ ହୋଇଯାଇଥିଲା ସେ ରାତିର କାଳିମା !

ଦାସେ ଆଖି ପୋଛିଲେ । ଦିନ ତଳକୁ ନଇଁ ପଡ଼ିଥିଲା । ପବନ ସ୍ଥିର ହୋଇଥିଲା ଟିକିଏ । ଅଳ୍ପ ଅଳ୍ପ ଓଦାଳିଆ ହୋଇଥିଲା ତା'ର ଦିହ । ଆଗକୁ ଆଗକୁ ଗାଁ ଦିଶୁଛି । ଛାଇଛାଇଆ ଟାପୁ । ଦାସେ ପଚାରିଲେ, ''ଆଉ କି କି ଗାଁସବୁରେ ନାଉରିଆ କହ । ଗୋଟିଏ ଗାଁରେ ତ ଦିନଟିଏ ଆଜି ଗଲା । କେତେ ଦିନ କଟିବ ଏ ନାଆରେ ? କେତେ ଦୁଃଖ ଦେଖିବା ଏ ଆଖିରେ ? ହେ ନୀଳକଣ୍ଠ, ଆଉ ଗୋଟେ କଥା ମନେରଖ, ଯାଜପୁରରେ ଗୋପ ଚୌଧୁରୀ ଅଛନ୍ତି ଏସ.ଡି.ଓ । ତାଙ୍କୁ ଖବର ଦେବାକୁ ହେବ, ଯାହା ଦେଖିଛେ କିତା କିତା କରି ଯିମିତି ସେ ରିପୋର୍ଟ ଦେବେ । ବ୍ରିଟିଶ ସରକାର ଜାଣୁ । ଘଣ୍ଟ ଘୋଡ଼ାଇ ଯୋଉ ଜାତିକୁ ସେ ଆଲୋକ ଦେଖଉଛି ଦେଖୁ ତା'ର ସ୍ୱରୂପ । ଲୋକଙ୍କ ଆଖି ଖୋଲୁ । ବିପ୍ଳବର ପଥ ଖୋଲୁ । ଜାଗୁ ଏ ଜାତି ।'' ସେ ନୀରବ ହେଲେ । ନାଆ ଚାଲିଥିଲା ମଙ୍ଗ ହଲେଇ ମହାପ୍ରଳୟ ଭିତରେ କେଉଁ ଶାଶ୍ୱତ ସ୍ଥିତିର ସନ୍ଧାନ କରି । ମହାନ୍ଧକାର ମଧ୍ୟରେ କେଉଁ ଆଲୋକବର୍ତ୍ତିକାର ସନ୍ଧାନ ଖୋଜି । ନାଉରିଆ କହିଲା - ''ବାଁ ହାତ ପଶ୍ଚିମ ପଟକୁ ରହିଛି ଶେରପୁର । ସେପାଖେ ବ୍ରାହ୍ମଣୀ ନଇକୂଳ ଅରୁଆଳର ବ୍ରାହ୍ମଣ ଶାସନ ଅଟିରା । ସଛନ ଗାଦି ପାଖକୁ ବାଲିଆପାଳ ଆଉ ତା ପଛକୁ ବାଲିଆ ।''

''ବାଲିଆ ! ବୈଷ୍ଣବ କବି ଅଭିମନ୍ୟୁଙ୍କ ଗାଁ ବାଲିଆ ?''

''ଆଜ୍ଞା, କିଏ ନ ଜାଣିଚି ତାଙ୍କର ଗୀତ ? ଏ ଅଞ୍ଚଳରେ ସଭିଏଁ ଗାଆନ୍ତି ହଳୁଆଠୁ ପାଠୁଆଯାଏ । ଶ୍ରୀରାଧା ବାତୁଳୀ ପ୍ରେମରସତୁଳୀ, ଛାନ୍ଦ ତ ସଭିଙ୍କ ମୁହଁରେ ।''

''ଆହା ! ସ୍ୱାଧୀନ ଉତ୍କଳର ଗୋଟିଏ ଗୋଟିଏ କୋଣାର୍କ ଏଇମିତି ହଜିଯାଇଛି ଆମ ଏଇ ହତଭାଗା ପରାଧୀନଙ୍କ ପେଇଁ । ଏ ଗାଁର ପଳାଶବନର ବସନ୍ତ ଋତୁ, କୃଷ୍ଣଚୂଡ଼ା ଆଉ ସୁନାରୀ ଫୁଲର ବୈଶାଖ ଏବେବି ଆସୁଛି । ଆସୁଛି ପୁଣି ତା ପଛକୁ ମେଘମେଦୁର ଆଷାଢ଼ର ପ୍ରଥମ ଦିବସ ଏବଂ ତମାଳ ଶ୍ୟାମ ବନଭୁବ । ସେଇ ପ୍ରାଚୀ, ସେଇ ବ୍ରାହ୍ମଣୀ ଏବେବି ରହିଛି; ହେଲେ କାହାନ୍ତି ଆଉ ଜୟଦେବ ? କାହାନ୍ତି ଅଭିମନ୍ୟୁ ? ପରାଧୀନତାର ଶୃଙ୍ଖଳରେ ଏ ଜାତି ହରେଇ ବସିଛି ତା'ର ସ୍ୱାତନ୍ତ୍ର୍ୟ, ତା'ର ବୈଭବ । ଶିରାରେ ଶିରାରେ ତା'ର ପଶ୍ଚିମୀ ହାଓ୍ୱା । ସେ ହାଓ୍ୱା ମାତାଲ କରୁଛି ଏ ଦେଶର ଅସଂଖ୍ୟ ଶାଳପ୍ରାଂଶୁ ଯୁବକଙ୍କୁ ଏବଂ ଏ ଦେଶର କେଉଁଠି କେତେ କନକ ଆଉ ଚମ୍ପାଗୋରୀ କେଉଁ ଶ୍ୱେତାଙ୍ଗ ରମଣୀର କ୍ରୀତଦାସୀ । ଶୁଣୁଛ ହୋ ନୀଳକଣ୍ଠ ! କଟକ ଗଲେ ବିଶ୍ୱନାଥବାବୁଙ୍କୁ ସବୁ ଜଣେଇବ । ଛାପିବେ ସବୁ 'ଉତ୍କଳ ସାହିତ୍ୟ'ରେ । ସେ ଦିନ ସେ ଯଉଁ ବରଷା... କଟକର ରାସ୍ତା ଆଉ ନର୍ଦ୍ଦମା ସବୁ ଏକ । ତୁମେ ବି ତ ସାଙ୍ଗରେ ଥିଲ । ବ୍ରଜବାବୁ, ଅଭିରାମବାବୁ, ଆମେ ସମସ୍ତେ ସେହି ନର୍ଦ୍ଦମା ପଚପଚ ଗଳିକନ୍ଦିରେ ବୁଲି ବୁଲି ପଙ୍କ କାଦୁଅ ମଖାମଖି । ସେଥକୁ ବିଶ୍ୱନାଥବାବୁଙ୍କୁ

ଡାକିବାବେଳକୁ ସେ ଚାହୁଁଛନ୍ତି ଇସ୍ତିକରା ଧୋବଧାଉଳିଆ ଲୁଗା କୁର୍ତ୍ତାକୁ । ସେଥିରେ ପୁଣି କବି ଆଉ ସାହିତ୍ୟର ପେଟ୍ରନ୍ ! ଯାହାକୁ ନେଇ କବିତା ସିଏ ତ ପଙ୍କ, କାଦୁଅରେ, ପାଣି ବରଷାରେ ପୋକମାଛି ପରି ପଚିସଢ଼ି ଯାଉଛି । କି କବିତା ଆଉ ଲେଖିବ ହୋ ତୁମେ କଟକ ସହରରେ ଇସ୍ତିଦିଆ କୁର୍ତ୍ତା ପିନ୍ଧି ?''

''ମୋର କିନ୍ତୁ ଗୋଟାଏ କଥା ସବୁବେଳେ ମନେହୁଏ । ଆପଣ ଯାହା କହନ୍ତୁ ପଛେ ସେଇଟା ମୋର ଛୋଟ ମନରେ ଷୋଳଅଣା ଠିକ୍ ।''

''କାହା କଥା କହୁଚ ତୁମେ ନୀଳକଣ୍ଠ !''

''ଏଇ ବଙ୍ଗବାସୀମାନଙ୍କ କଥା । ଅଭିମନ୍ୟୁଙ୍କ ବିଷୟରେ ମୁଁ ଆପଣଙ୍କ ସହିତ ଏକମତ ନୁହେଁ । ମୋର ମନେହୁଏ, ଉତ୍କଳର ସ୍ୱାଧୀନଚେତା କବିମାନଙ୍କ ପରି ସ୍ୱାତନ୍ତ୍ର୍ୟ ତାଙ୍କର ନାହିଁ । ଉତ୍କଳୀୟ ବୈଷ୍ଣବ ଭାବ ଛାଡ଼ି ବଙ୍ଗୀୟ ଭାବରେ ଭରା ତାଙ୍କର କବିତା ଜଣେ ଖାଣ୍ଟି ଓଡ଼ିଆ ପାଖରେ ବେଶି କିଛିଟା ବିଦେଶୀ । କାହିଁକି, ଓଡ଼ିଶାର ନିଜସ୍ୱ ବୈଷ୍ଣବ ଚିନ୍ତା କ'ଣ ନ ଥିଲା ? ସେମିତି ଏଇ ବିଶ୍ୱନାଥବାବୁଙ୍କ ଭଳି କେଇଜଣ ଆମ ବେଳର ଲୋକ ଏହି ବ୍ରାହ୍ମଧର୍ମୀ ସାଙ୍ଗରେ ଆଣିଛନ୍ତି ପୁଣିଥରେ ବଙ୍ଗୀୟ ଚେତନା । ଆପଣ ତ ଜାଣନ୍ତି, ୧୮୦୩ରେ ଓଡ଼ିଆ ଯେ ପରାଧୀନ ହେଲା ସେଥିରେ ଇଂରେଜମାନଙ୍କର ଯେତେଟା ବିଜୟ ନ ହୋଇଛି ତେତେଟା ହେଇଛି ବଙ୍ଗାଳୀଙ୍କର । ଇଂରେଜ ତ ବେପାରୀ ଜାତି । ହାଟବଜାରରେ ତା'ର କାରବାର । ବଙ୍ଗାଳୀମାନେ କିନ୍ତୁ ସେଇ ଦିନଠୁଁ 'ଓଡ଼ିଶା' ଆଉ 'ଓଡ଼ିଆ' ନାମ ଦୁଇଟାକୁ ଉଠେଇଦେବା ପାଇଁ ବାଟ ପାଇ ଯାଇଛନ୍ତି । ବିଶ୍ୱନାଥବାବୁଙ୍କ ଗ୍ରୁପ୍‌ତ ଓଡ଼ିଆଭାଷା ପାଇଁ ଏତେ ପାଗଳ, ଜାତି କଥା ଉଠିବା ବେଳକୁ ଏମିତି ପଛଘୁଞ୍ଚା କାହିଁକି ? ୟଙ୍ଗ ଉତ୍କଳ ଆସୋସିଏସନକୁ କେତେଥର ଆମେ ତାଙ୍କୁ ନ ଡାକିଛେ ?''

''ମୁଁ ଜାଣେ ତୁମେ ସେଇ କଥା କହିବ । କଥାଟା ତୁମର ନିହାତି ଭୁଲ ନୁହେଁ । ରାଧାନାଥବାବୁ, ମଧୁବାବୁଙ୍କ ଗ୍ରୁପ୍ ସାଙ୍ଗକୁ ମି. ଦାସ ବି ବେଳେବେଳେ ସମର୍ଥନ କରନ୍ତି । ତୁମେ ତ ସେକଥା ଜାଣ । ତେବେ ଗୋଟେ କଥା ନୀଳକଣ୍ଠ ! ବଙ୍ଗଳା ଆଉ ଓଡ଼ିଶା ପାଖାପାଖି ହେଇ ଭାରତମାତାର ଦୁଇ ଝିଅ । ଦିହ ଲଗାଲଗି ହେଇ ବସିଛନ୍ତି ଯେତେବେଳେ ୟା ବାସ୍ନା ତା' ପାଖକୁ ତା' ବାସ୍ନା ୟା ପାଖକୁ ଆସିବା ଖୁବ୍ ସ୍ୱାଭାବିକ । ତେବେ ଦୁଃଖ ହୁଏ, ଆମ ଭିତରୁ ଅନେକ ଭାବୁଛନ୍ତି ଆମର ବାସ୍ନା ଆଦୌ ନାହିଁ । ଯାହା କିଛି ତାଙ୍କରି । ତାଙ୍କଠୁଁ ଧାର ଆଣିବାକୁ ପଡ଼ିବ । ଏଇ ଓଡ଼ିଆଙ୍କର ବଙ୍ଗାଳୀଙ୍କୁ ନେଇ ଧାରଣା ଯାହା କେତେକ ଭାରତବାସୀଙ୍କର, ୟୁରୋପୀୟମାନଙ୍କ ବିଷୟରେ ମଧ ଧାରଣା ସେୟା । କିନ୍ତୁ ଅଭିମନ୍ୟୁଙ୍କ ବିଷୟରେ ଏକଥା କୁହାଯାଇପାରେନା । ମୁଁ ଲକ୍ଷ୍ୟ କରିଛି, ଗୌଡ଼ୀୟ ବୈଷ୍ଣବମାନଙ୍କ ବିରୋଧରେ ତୁମର ସବୁବେଳେ ଅଭିଯୋଗ । ତୁମେ କୁହ, ତାଙ୍କରି ପାଇଁ ଓଡ଼ିଶା ଦୁର୍ବଳ ହୋଇଛି ।

କୌଣସି ବାଦର କେବେ କେହି ଦୋଷ ଦେଇପାରେନା । ପ୍ରତ୍ୟେକ ବାଦର ମୂଲ୍ୟ ରହିଛି । ସବୁ କିଛି ନିର୍ଭର କରେ ସେଇ ବାଦର ବ୍ୟବହାର ଉପରେ । ତୁମେ ଚୈତନ୍ୟଙ୍କୁ ଦୋଷ ଦିଅ । ମୁଁ କିନ୍ତୁ ଦୋଷ ଦିଏ ପ୍ରତାପରୁଦ୍ରଙ୍କୁ । ଯଦି ଏ ଧର୍ମ ଗ୍ରହଣ ପରେ ଓଡ଼ିଶାର ପତନର ମଞ୍ଜି ସେ ପୋତିଥାନ୍ତି, ତେବେ ଏହା ତାଙ୍କରି ଦୂରଦୃଷ୍ଟିର ଅଭାବ । ପରିପକ୍ୱ ବୁଝାମଣାର ଅଭାବ । ଉତ୍କଳୀୟ ଧର୍ମରେ ପଞ୍ଚୋପାସନା ଭିତର ଦେଇ ଯେଉଁ ଉଦାର ଚିନ୍ତାଧାରା ଯୁଗ ଯୁଗରୁ ରହିଆସିଛି - ଯେଉଁଠି ବୌଦ୍ଧ କୁହ, ଜୈନ କୁହ, ନ୍ୟାୟ କୁହ ବା ଯୋଗ ବେଦାନ୍ତ ସାଂଖ୍ୟ ଆଉ ଯାହା କିଛି କୁହ, ସବୁକୁ ଏକ କରିଦେଇଛି ଆମର ଜଗନ୍ନାଥ ଧର୍ମ, ସେଠି ଅଭିମନ୍ୟୁ ପରି ଭକ୍ତମାନେ ଯଦି ଗୌଡ଼ୀୟ ବୈଷ୍ଣବ ଭାବକୁ ଆପଣାର କରିବାକୁ ଚେଷ୍ଟା କରିଥାନ୍ତି, ତେବେ ସେସବୁ ସେମାନଙ୍କର ମହତ ଚିନ୍ତା ଏବଂ ଉଦାର ଧାର୍ମିକ ଚେତନାର ଫଳ ବୋଲି କହିବାକୁ ହେବ ।... ତୁମେ ଆହୁରି ଚିନ୍ତା କର ନୀଳକଣ୍ଠ ! ଅସହିଷ୍ଣୁ ହୁଅନା । ଜାଣିରଖ, ଅସହିଷ୍ଣୁତା ଜଣେ ଆଦର୍ଶ ଗବେଷକର ପ୍ରଧାନ ଅନ୍ତରାୟ... ।''

ନାଆ ଚାଲିଥିଲା ଅରୁଆଲ ଆଡ଼କୁ । ନାଉରିଆ କହିଲା, ''ଆଜି ରାତିଟା ଅରୁଆଳରେ କଟେଇ କାଲି ସକାଳେ ଅଟିରା କାମ ସାରି ଆସିବା ରାମଚନ୍ଦ୍ରପୁର ଆଉ ବରୀ । ତା' ପରେ ବାଲିଆପାଳ ଆଉ ବାଲିଆ । ଆମ ଏଇ ତଳମାଳ ଅଞ୍ଚଳର ଗାଁସବୁ ମାଳକୁମାଳ ବାବୁ ! ମଝିରେ ମଝିରେ ଛୋଟ ଛୋଟ ଗାଁଟିମାନ ବାର କି ଚଉଦ ଘରକୁ ନେଇ । ଏ ବେଳରେ ଟିକିନିଖି ଖୋଜାଲୋଡ଼ା କେତେ କରିପାରିବା ଆମେ ?'' ନନ୍ଦେ ହଁ ଭରିଲେ । ନୀଳକଣ୍ଠ ଅନ୍ୟମନସ୍କ ଥିଲେ । ହୁଏତ ଗୋପବନ୍ଧୁଙ୍କ କଥାଗୁଡ଼ିକ ଉପରେ ଆଉ ଥରେ ଚିନ୍ତା କରୁଥିଲେ । ଅନନ୍ତ ମିଶ୍ର କହିଲେ, ''ଆମେ ଯାହାସବୁ ଆଣିଛୁ, ସିଏ ସମୁଦ୍ରକୁ ଶଙ୍ଖେପରି । ଯେତେଟା ଯିବ । କ'ଣ ଆଉ କରିବା ? ଖାଲି ହାତରେ ଭୋକିଲା ମଣିଷଙ୍କ ମୁହଁ ଦେଖିବାକୁ ତ ଆଉ ଯିବାନି ?'' ଦାସେ କହିଲେ, ''ନା, ମିଶ୍ରେ ଆପଣ ବୋଧହୁଏ ଜାଣି ନାହାନ୍ତି । କଥା ହେଇଚି କାଲି ଆଉ ଗୋଟିଏ ନାଆ ଆସି ଲାଗିବ ରାମଚନ୍ଦ୍ରପୁରରେ । ବ୍ରଜବାବୁ ସେ ଭାର ନେଇଛନ୍ତି । ମାଗଣା କରିବା ତ ଆଉ ସହଜ ନୁହେଁ । ମୁଁ ବି ତାଙ୍କୁ ବାର ବାର କହି ଆସିଥିଲି । ଯେତେଟା ସମ୍ଭବ ସରକାରୀ ସାହାଯ୍ୟ ବି ଅଣାଯିବ । ବେଶି ନାଆ ବି ଆସିପାରେ । ଆମକୁ ଏଇ ବାଟ ଦେଇ ବରୁଆ ପର୍ଯ୍ୟନ୍ତ ଯିବାକୁ ହେବ । ବ୍ରଜବାବୁ ନିଜେ ବି ଆସିବେ ତାଙ୍କ ଗାଁ ସୟଦପୁରକୁ । ଆମ ଡାହାଣହାତି ପୂର୍ବ କଣକୁ ତାଙ୍କ ଗାଁ । ଯେତେ ଦିନ ଯିବ ଯାଉ । ଯେତେ ଲୋକଙ୍କ ପାଟିରେ ଅଧାର ଲାଗିବ ଲାଗୁ । ଯିଏ ଜୀବନ ଦେଇଛି ସିଏ ପୁଣି ସେଇ ଜୀବନ ନବାକୁ ଯଦି ଅଡ଼ିବସିବ, କିଏ ରଖିବ ଆଉ ?''

ଗୋଧୂଳି ଆଉ ଟିକକେ ହବ । ଅନ୍ୟ ଦିନେ ଏଇ ରାସ୍ତାରେ ପଲ ପଲ ଗୋରୁ ଛୁଟୁଥାନ୍ତେ । ଘରମୁହାଁ ମା' ଥନ ପାଖରେ ମୁହଁ ଦେଇ ଛୋଟ ଛୋଟ ଲାଙ୍ଗୁଳଟିମାନ ଟେକି କୁଦୁଥାନ୍ତେ ଟିକି ଟିକି ବାଛୁରୀ । ଧୂଳି ଉଡୁଥାନ୍ତା ଆକାଶକୁ ଲାଗି । ବୁଡ଼ନ୍ତା ସୂର୍ଯ୍ୟ ଆଖି ମିଟି ମିଟି ମାରୁଥାନ୍ତା ସେଇ ଧୂଳିରେ । ପଛେ ପଛେ ଛୁଟୁଥାନ୍ତା ଗାଈଆଳ ଗୋରୁ ଅଡ଼େଇ - ''ହେ ହେ ହେ ଆଲୋ ଏ ନାଲି, ନାରଙ୍ଗ, ପଧାନଘର ଗୁରୁବାରୀ ଆସୁଛ ନା ଇଆଡ଼େ ! ... ଆସୁଛ ନା ବାଟକୁ ? ଆଉ କେବେ ଗୀତ ଗାଇ - ''ଓ ହୋ ହୋ ହୋ ଉଡ଼ିଗଲେ ଗେଣ୍ଡାଳିଆ, ଝାଡ଼ିଦେଲେ ପକ୍ଷୀ, କାନ୍ଦୁଛି ମୋ ସୁନାଗୋରୀ କଳାବର ଦେଖି...'' ଏବଂ ଦଳକୁ ଦଳ ଗେଣ୍ଡାଳିଆ ପକ୍ଷ ଝାଡ଼ି ଉଡ଼ିଯାଉଥାନ୍ତେ ନୀଡ଼ମୁହାଁ । ପରସବୁ ତାଙ୍କର ଏଇ ଅସ୍ତସୂର୍ଯ୍ୟର କିରଣରେ ଝଟକୁଥାନ୍ତା ସୁନା ପରି । ହୁଡ଼ାମାଳ ବିଲ ଭିତରେ ସବୁଜ କିଆରିରୁ କଳା କଳା ମଣିଷ ପଲ ବେଉଷଣ ଛାଡ଼ି ଉଠୁଥାନ୍ତା ଘରମୁହାଁ । ବାଡ଼ମାନଙ୍କରୁ ଉଡ଼ିଆସୁଥାନ୍ତା ଜହ୍ନିଫୁଲର ନିଦୁଆ ବାସ୍ନା । ମନ୍ଦିରରୁ ଆଉ ଟିକକେ ଶୁଭନ୍ତା ଘଣ୍ଟା ଘଡ଼ି । ଏଇନେ ଜଳାର୍ଣ୍ଣବ ଏଇ ପ୍ରଳୟର ସୁଅ ଉପରେ ନାଲି ସୂର୍ଯ୍ୟ ଝଟକୁଛି ନିଆଁ ଭଳି । ସୁଅ ମୁହଁରେ ଭାସିଯିବା ପରେ ଆଉ ଯାହା କିଛି ରହିଛି ସବୁ ଯେମିତି ଜାଳିପୋଡ଼ି ପାଉଁଶ କରିଦେବ । ଏଇ ତା'ର ସଙ୍କେତ । ଅରୁଆଳ ଗାଁ ପାଖେଇ ଆସୁଛି । ଦକ୍ଷିଣପଟକୁ ତା'ର ବହିଯାଉଛି ଘୋ ଘୋ ଗର୍ଜନ କରି ବ୍ରାହ୍ମଣୀ । କେଉଁଠି କେଉଁଠି ଘାଇ ଭାଙ୍ଗି ପାଣିସବୁ ଛଇଲା ହୋଇ ଖେଳିଯାଉଛି ବି' ପଟକୁ ।

ଅନ୍ଧାର ଆସୁଛି ଧୀରେ ଧୀରେ ।

**ଟିପ୍ପଣୀ**

| | | |
|---|---|---|
| ମୋତି | : | ଗୋପବନ୍ଧୁଙ୍କ ପତ୍ନୀ |
| ବ୍ରଜବାବୁ | : | ବ୍ରଜସୁନ୍ଦର ଦାସ, 'ମୁକୁର' ସଂପାଦକ |
| ବିଶ୍ୱନାଥବାବୁ | : | ବିଶ୍ୱନାଥ କର, 'ଉତ୍କଳସାହିତ୍ୟ' ସଂପାଦକ |
| ମି. ଦାସ | : | ମଧୁସୂଦନ ଦାସ, ବାରିଷ୍ଟର |
| ଅଭିରାମବାବୁ | : | ଅଭିରାମ ଭଞ୍ଜ |
| ନୀଳକଣ୍ଠ | : | ନୀଳକଣ୍ଠ ଦାସ |
| ଅନନ୍ତ ମିଶ୍ର | : | ଗୋପବନ୍ଧୁଙ୍କ ସହକର୍ମୀ |
| ରାମଚନ୍ଦ୍ରବାବୁ | : | ରାମଚନ୍ଦ୍ର ଦାସ, ପୁରୀର ମୋକ୍ତାର |

[୧୯୭୩]

— ୦ —



ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ସାହିତ୍ୟିକ ଓ ଦାର୍ଶନିକ ଡକ୍ଟର ଅନନ୍ତ ଚରଣ ଶୁକ୍ଳ
ବିଗତ ଚାରି ଦଶନ୍ଧି ଧରି ବୌଦ୍ଧିକ ସାଧନା କରି ଆସୁଛନ୍ତି ।
ଓଡ଼ିଆ ସାହିତ୍ୟରେ ତାଙ୍କର ପ୍ରବେଶ ୧୯୬୨ ମସିହାରୁ
ଯେତେବେଳେ ସେ 'ଆଲୋକ ରେଖା'ନାମକ ମାସିକ ପତ୍ରିକାର
ସଂପାଦନା କଲେ ଭଦ୍ରକରୁ । ତା ପରଠାରୁ ସେ ଓଡ଼ିଆ ସାହିତ୍ୟର ବିଭିନ୍ନ
ବିଭାଗ ଯଥା ଗଳ୍ପ, ନାଟକ, ପ୍ରବନ୍ଧ,ସାହିତ୍ୟତତ୍ତ୍ୱ ପ୍ରଭୃତିକୁ ଅବଦାନ କରି ଚାଲିଛନ୍ତି,
ଯଦିଓ ତାଙ୍କର ଇଂରାଜୀ ରଚନା ତୁଳନାରେ ସେସବୁର ସଂଖ୍ୟା
ବେଶୀ ନୁହେଁ । ୧୯୬୯ ମସିହାରେ ତାଙ୍କର ପ୍ରକାଶିତ 'ଆରିଷ୍ଟୋଟଲଙ୍କ
କାବ୍ୟତତ୍ତ୍ୱ' ଓଡ଼ିଆ ସମାଲୋଚନା ସାହିତ୍ୟର ଏକ ଦିଗବାରେଣୀ ।
ତାଙ୍କର ପ୍ରଥମ ଗଳ୍ପ ସଂକଳନ– 'ସୁଲତାକୁ ଶେଷ ଚିଠି',(୧୯୭୭) ।
ସେ ଜଣେ ଲବ୍ଧପ୍ରତିଷ୍ଠ Philosopher of art,Religion and language.
Journal of comparative Literature and Aesthetics (1978)
ର ପ୍ରତିଷ୍ଠାତା ସଂପାଦକ । ଆମେରିକା,ଇଂଲାଣ୍ଡ, ଇଟାଲୀରୁ ପ୍ରକାଶିତ ତାଙ୍କର
ପୁସ୍ତକମାଳା ମଧ୍ୟରେ Estetica Indiana Conteporanea (1996)
Art and Representation(2001) Art and Experience (2003),
Art and Essence (2003) । ପ୍ରକାଶ ଅପେକ୍ଷାରେ Art and
Expression ଏବଂ ଆହୁରି ଅନେକ ପୁସ୍ତକ । ୧୯୭୭ ମସିହାରେ
କୋଲକାତାର Rupa & co ପ୍ରକାଶ କରିଥିଲେ ତାଙ୍କର ପୁସ୍ତକ
The Concept of Imitation in Greek and Indian Aesthetics.
ସ୍ୱିଡ଼େନର ପ୍ରସିଦ୍ଧ ଉପାସାଲା ବିଶ୍ୱବିଦ୍ୟାଳୟରେ ସେ ଥିଲେ ପରିଦର୍ଶୀ
ପ୍ରଫେସର (୧୯୯୩–୯୪) ୟୁରୋପର ବିଭିନ୍ନ ବିଶ୍ୱବିଦ୍ୟାଳୟରେ
ତାଙ୍କର ବକ୍ତୃତାମାଳା ସ୍ମରଣୀୟ ହୋଇ ରହିଛି । ଏହି ସୁଧୀ ବିଦ୍ୱାନ୍‌ଙ୍କର
ନୂତନ ସ୍ୱାଦର ଗଳ୍ପ ସଂକଳନ 'ଶତାବ୍ଦୀର ଶବ୍ଦ' ପାଠକମାନଙ୍କଦ୍ୱାରା
ଆଦୃତ ଓ ଗ୍ରହଣୀୟ ହେବ ବୋଲି ଆଶା ଓ ବିଶ୍ୱାସ ।

ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨
www.vidyapuri.com